# ରାହୁଲ ସଂକୃତାୟନ

ମୂଳ ହିନ୍ଦୀ : ପ୍ରଭାକର ମାଚୱେ

ପ୍ରକାଶକ: ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ

ଓଡ଼ିଆ ଅନୁବାଦ:

ଭୂପେନ୍ ମହାପାତ୍ର



# ରାହୁଳ ସଂକୃତାୟନ

ଅନୁବାଦ :
**ଭୂପେନ୍ ମହାପାତ୍ର**
'କଥାଘର', ଛେଣ୍ଡ୍ କଲୋନୀ, ରାଉରକେଲା-୧୫

ପ୍ରକାଶକ:
**ତୀରତରଙ୍ଗ ପ୍ରକାଶନ**

ପ୍ରଚ୍ଛଦ/ଡିଟିପି/ଲେଆଉଟ୍ ଓ ମୁଦ୍ରଣ :
**ତୀରତରଙ୍ଗ ପ୍ରିଣ୍ଟର୍ସ**
ବି-୩୦, ଚନ୍ଦକା ଶିଳ୍ପାଞ୍ଚଳ, ଭୁବନେଶ୍ୱର-୨୩,
ଟେଲିଫ୍ୟାକ୍ସ : ୦୬୭୪-୨୭୨୫୮୪୩

ମୂଲ୍ୟ: ଟ. ୫୦/- ମାତ୍ର
ପ୍ରଥମ ପ୍ରକାଶ : ବିଜୟା ଦଶମୀ, ୨୦୦୯

---

**Rahul Sankrutayan**

Translated by **Bhupen Mohapatra**
'KATHAGHARA', Chhend Colony, Rourkela-15

*Publisher:*
**Teerataranga Publication**

*Cover Design/DTP/Layout & Printed at:*
**Teerataranga Printers**
B-30, Chandaka I.E, Bhubaneswar-23
Telefax : 0674-2725843

*Price :* **Rs. 50/- only**
*First Edition* **Bijaya Dashami, 2009**

# ଅନୁବାଦକୀୟ

ମହାପଣ୍ଡିତ ରାହୁଲ ସଂକୃତାୟନଙ୍କୁ ଓଡ଼ିଆ ପାଠକମାନଙ୍କ ଠାରେ ପହଞ୍ଚାଇବା ଇଚ୍ଛା ମୋର ଅନେକ ଦିନରୁ ଥିଲା । କାରଣ ବହୁ କମ୍ ଲେଖା ତାଙ୍କର ଓଡ଼ିଆରେ ଅନୁବାଦ ହେଇଛି ବୋଲି ମୋର ବିଶ୍ୱାସ । ଯୋଉ ତାଲିକା ତାଙ୍କର ଏଥିରେ ସନ୍ନିବେଶିତ ହୋଇଛି ସେଥିରେ କେବଳ 'ଭଲଗାରୁ ଗଙ୍ଗା' ହିଁ ଓଡ଼ିଆରେ ଅନୁବାଦ ହେଇଛି । ଆଉ କିଛି ହେଇଛି କି ନା ସେ କଥା ମୋ ନଜରକୁ ଆସିନାହିଁ ।

ରାହୁଲଙ୍କ ବ୍ୟକ୍ତିତ୍ୱ, ଅସାଧାରଣ ପ୍ରତିଭା, ସର୍ବୋପରି ତାଙ୍କର ପାଣ୍ଡିତ୍ୟ ଏବଂ ଜୀବନ ଦର୍ଶନ ମୋତେ ଆକର୍ଷଣ କରିଥିଲା । ରାହୁଲ ରାଜନୀତିରେ ଯୋଗ ଦେଇଛନ୍ତି । କଂଗ୍ରେସରୁ କମ୍ୟୁନିଜିମକୁ ସେ ଲମ୍ଫ ପ୍ରଦାନ କରିଛନ୍ତି । କିନ୍ତୁ କୌଣସି ଠାରେ ସେ ସ୍ଥାୟୀ ଭାବରେ ତିଷ୍ଠିପାରି ନାହାନ୍ତି । ସେ ସାଧୁ ସନ୍ୟାସୀମାନଙ୍କ ସହିତ ମିଶିଛନ୍ତି, ଲାମାମାନଙ୍କ ଠାରେ ରହି ବୌଦ୍ଧଧର୍ମ ଶିକ୍ଷା କରିଛନ୍ତି । ପୁଣି ସେମାନଙ୍କୁ ଛାଡ଼ି ଅଲଗା ହୋଇ ଯାଇଛନ୍ତି । ଋଷିଆରୁ କଲମ୍ବୋ ପୁଣି ଇଂଲଣ୍ଡରୁ ଜାପାନ ସେ ଭ୍ରମଣ କରିଛନ୍ତି । କେତେବେଳେ ସଂସ୍କୃତ ଅଧ୍ୟାପକ, ପୁଣି କେତେବେଳେ ବୌଦ୍ଧ ଦର୍ଶନ ଅଧ୍ୟାପକ -ବଡ଼ ବୈଚିତ୍ରମୟ ତାଙ୍କ ଜୀବନ । ପ୍ରେମ କରି ବିବାହ କରିଛନ୍ତି ଋଷିଆରେ ପୁତ୍ର ସଂନ୍ତାନ ଜନ୍ମ ହେବା ପରେ ତାଙ୍କୁ ଛାଡ଼ି ପଳେଇ ଅସନ୍ତି ଭାରତବର୍ଷକୁ । ମାର୍କ୍ସ, ଲେନିନ୍, ମାଓଙ୍କୁ ପଢ଼ନ୍ତି, ତାଙ୍କ ଉପରେ, ତାଙ୍କ ଦର୍ଶନ ଉପରେ ବହି ଲେଖନ୍ତି କିନ୍ତୁ ଭୂୟସୀ ପ୍ରଶଂସା କରନ୍ତି ଗାନ୍ଧୀଙ୍କୁ । ତାଙ୍କୁ ତୁଳନା କରନ୍ତି ବୁଦ୍ଧଙ୍କ ସହିତ ।

ବଡ଼ ବିଚିତ୍ର ତାଙ୍କ ଜୀବନ । ପ୍ରଚଣ୍ଡ ପ୍ରତିଭାର ଅଧିକାରୀ । ତାଙ୍କର ସମଗ୍ର ଜୀବନକୁ ପର୍ଯ୍ୟାଲୋଚନା କଲେ ମୁଁ ଭାବେ ସେ କଅଣ ତେବେ ? ଗୋଟିଏ ମଣିଷ ପାଖରେ ଏତେ ସବୁ ସମ୍ଭବ ହେଲା କିପରି !

ଏ ଅନୁବାଦ କାମ ମୁଁ ଆରମ୍ଭ କରିଥିଲି ୧୩.୬.୨୦୦୪ ରେ ଏବଂ ଶେଷ କଲି ୨୮.୯.୨୦୦୬ । ମୋ ପାଇଁ ଏ ଅନୁବାଦ ଯେ ସହଜ ନଥିଲା ତାହା ଏଥିରୁ ଜଣା ପଡ଼େ । ଓଡ଼ିଆ ପାଠକମାନେ ଏଥିରୁ ସାମାନ୍ୟ ଉପକାର ପାଇଲେ ମୋ ଶ୍ରମ ସାର୍ଥକ ହେବ ।

'ତୀରତରଙ୍ଗ'ର ସଂପାଦିକା ଶ୍ରଦ୍ଧେୟା ବନ୍ଦନା ମିଶ୍ର ପାଣ୍ଡୁଲିପି ଦେଖି ତାର ପ୍ରକାଶନ ଦାୟିତ୍ୱ ନେବାକୁ ଆଗ୍ରହ ପ୍ରକାଶ କଲେ । ମୁଁ ତାଙ୍କ ଠାରେ କୃତଜ୍ଞ ।

*ଭୂପେନ୍ ମହାପାତ୍ର*

# ଭୂମିକା

ମହାପଣ୍ଡିତ ରାହୁଲ ସାଂକୃତ୍ୟାୟନଙ୍କର ଜୀବନ ଓ ରଚନା ବିଷୟରେ ଲେଖିବା ଯେ କୌଣସି ଜୀବନୀକାର ପକ୍ଷରେ ନିଶ୍ଚୟ ଅତ୍ୟନ୍ତ କଠିନ ବିଷୟ - ଠିକ୍ ଯୁଦ୍ଧ ପାଇଁ ପ୍ରସ୍ତୁତି ପରି । କାରଣ ତାଙ୍କ ବିଷୟରେ ନା ଅଛି କୌଣସି ଉଲ୍ଲେଖଯୋଗ୍ୟ ଗ୍ରନ୍ଥ, ଏପରିକି ହିନ୍ଦୀ ଭାଷାରେ ମଧ୍ୟ ନାହିଁ, ସେମିତି ତାଙ୍କ ରଚନାର ପ୍ରକୃତି ଓ ପରିଧି, ଯାହାର ବୈଚିତ୍ର୍ୟ ହିଁ ପ୍ରଧାନ। ତାର ବିସ୍ତୃତ ଅବଦାନ ସମ୍ପର୍କରେ ଆଲୋଚନା ପ୍ରାୟ ଅସମ୍ଭବ । ଗୋଟିଏ ଉଦାହରଣ ହିସାବରେ ନିଆଯାଇପାରେ- 'ମେରୀ ଜୀବନଯାତ୍ରା' ବା 'ମୋର ଜୀବନଯାତ୍ରା', ତାଙ୍କର ଆତ୍ମଜୀବନୀ। ୧୯୪୪-୧୯୫୦ ମସିହା ଭିତରେ ଏହି ଗ୍ରନ୍ଥଟିର ଦୁଇ ଖଣ୍ଡ ପ୍ରକାଶିତ ହୋଇଛି । କିନ୍ତୁ ତାର କୌଣସି ସଂସ୍କରଣ ହୋଇ ନାହିଁ । ଗୋଟିକର ପୃଷ୍ଠା ସଂଖ୍ୟା ୫୬୪ ଓ ଅନ୍ୟଟିର ୭୩୮। ୧୯୪୪ ମସିହା ପର୍ଯ୍ୟନ୍ତ ତାଙ୍କ ବ୍ୟସ୍ତ ବହୁଳ ଜୀବନର ଅନେକ ଘଟଣା ସେଥିରେ ଅଛି । ତାଙ୍କ ମୃତ୍ୟୁ ପରେ ଯେଉଁ ତିନି ଖଣ୍ଡ ପ୍ରକାଶ ପାଇଚି ସେଥିରେ ତାଙ୍କ ଜୀବନର ଶେଷ ଘଟଣାବଳୀର ଉଲ୍ଲେଖ ନାହିଁ । ତାଙ୍କ ଜୀବନର ଅସଂଖ୍ୟ ଦିନଲିପି ଆଜି ସୁଦ୍ଧା ପ୍ରକାଶ ପାଇନାହିଁ ।

ତଥାପି ରହୁଲଙ୍କର ତିନି ହଜାର ପୃଷ୍ଠାର ଆତ୍ମଜୀବନୀଟିକୁ ଯଦି ଗୋଟିଏ ଛୋଟ ଅଧ୍ୟାୟରେ ଲେଖାଯାଇ ପାରେ ତେବେ ତାହା ହେବ ତାଙ୍କ ପାଇଁ ଅଶେଷ ଶ୍ରଦ୍ଧାର ନିଦର୍ଶନ । ତାଙ୍କ ସାହିତ୍ୟ ସମ୍ପର୍କରେ ମଧ୍ୟ ଏକ କଥା କୁହାଯାଇ ପାରେ । ଏହି ବହିର ପରିଶିଷ୍ଟରେ ପାଞ୍ଚଟି ଭାଷାରେ ପ୍ରକାଶିତ ତାଙ୍କର ୧୨୭ଟି ବହିର ତାଲିକା ପ୍ରଦାନ କରାଯାଇଛି । ଯଥାକ୍ରମେ ଏହି ଭାଷାଗୁଡ଼ିକ ହିନ୍ଦୀ, ସଂସ୍କୃତ, ପାଲି, ତିବ୍ବତି ଏବଂ ଭୋଜପୁରୀ । ତାଙ୍କ ରଚନାର ବିଷୟ ମଧ୍ୟ ବିବିଧ । ଯଥା - ଦର୍ଶନ, ଇତିହାସ, ବିଜ୍ଞାନ, ଜୀବନୀ, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, ଅଭିଧାନ, ବ୍ୟାକରଣ, ସମାଜ ବିଜ୍ଞାନ, ଭ୍ରମଣ କାହାଣୀ, ତିବ୍ବତି ଶାସ୍ତ୍ର ଓ ବୌଦ୍ଧ ଦର୍ଶନ, ଲୋକ ସଂସ୍କୃତି, ରାଜନୀତି - ଏପରିକି ପ୍ରଚାରଧର୍ମୀ କ୍ଷୁଦ୍ର ପୁସ୍ତିକା ମଧ୍ୟ ତାଙ୍କ ରଚନାରୁ ବାଦ୍ ପଡ଼ିନାହିଁ । ତାଙ୍କ ରଚନା ସବୁ ଏହିପରି ଭାବରେ



ବହୁ ବୈଚିତ୍ର୍ୟପୂର୍ଣ୍ଣ । ପୁଣି, ଅତ୍ୟନ୍ତ ଗଭୀର ଓ ମାନବଶୀଳ ରଚନାରେ ମଧ୍ୟ ତାଙ୍କର ଦକ୍ଷତା ସମାନ । ଯେମିତି କୁହାଯାଇ ପାରେ ଧର୍ମକୀର୍ତ୍ତିର ବୌଦ୍ଧ ନ୍ୟାୟ ବିଷୟରେ ଲେଖା "ବାର୍ତ୍ତିକୋ"ର ଟିକାସବୁ । ପାଠକକୁ ସେ ଲେଖାର ଗାମ୍ଭୀର୍ଯ୍ୟ ସ୍ତବ୍ଧ କରିଦିଏ । ସେ ଯେପରି ବିଦ୍ୱାନ ଓ ଅକ୍ଲାନ୍ତ ପଥଯାତ୍ରୀ ସେହିପରି ମଧ୍ୟ ସମାଜ ସଂସ୍କାରକ।

ବାସ୍ତବିକ ଆଶ୍ଚର୍ଯ୍ୟ ହେବାକୁ ହୁଏ ଯେ ରାହୁଳ ଏପରି ଏକ ବ୍ୟକ୍ତି ଥିଲେ ଯାହାଙ୍କର କୌଣସି ଆନୁଷ୍ଠାନିକ ଶିକ୍ଷା ନଥିଲା, ଯେ ବାରମ୍ବାର ନିଜର ନାମ ଠିକଣା ଓ ଧର୍ମ ବଦଳ କରିଛନ୍ତି, ଏପରିକି ତାଙ୍କର କର୍ମକ୍ଷେତ୍ରରେ ମଧ୍ୟ କୌଣସି ଠିକ୍ ଠିକଣା ନଥିଲା ଏବଂ ଯିଏ ତାଙ୍କର ଆତ୍ମଜୀବନୀରେ ବୁଦ୍ଧଙ୍କ ଆପ୍ତବାଣୀ "ଜ୍ଞାନ ମୋ ପାଖରେ ନୌକା ପରି, ମଥାର ବୋଝ ପରି ନୁହେଁ"କୁ ଉଦ୍ଧାର କରିଛନ୍ତି । ସେହି ବହୁ ଭାଷାବିତ୍ ଓ ବିଶ୍ୱ ପର୍ଯ୍ୟଟକଙ୍କ ପକ୍ଷରେ ଏତେ ବିଶାଳ ରଚନା ସବୁ ସମ୍ଭବ ହେଲା କିପରି ?

ତିବ୍‌ବତର ଦୁର୍ଗମ ଅଞ୍ଚଳରେ ଘୂରି ବୁଲି, ଜାତୀୟ ଆନ୍ଦୋଳନରେ ଯୋଗଦାନ ଜନିତ କଠୋର କାରାବରଣ ପରେ ମଧ୍ୟ ସେ ଏତେ ଗ୍ରନ୍ଥ ରଚନା କଲେ କିପରି ?

ସତ କଥା କହିବାକୁ ଗଲେ ରାହୁଳଙ୍କୁ ଜଣେ ଯେତିକି ଜାଣେଁ ସେତିକି ତାଙ୍କର ସଂଗଠିତ ଓ ବିଶାଳ ବ୍ୟକ୍ତିତ୍ୱ, କଷ୍ଟ ସହିଷ୍ଣୁତା, ଜ୍ଞାନର ଆହରଣ ପାଇଁ ପ୍ରଚଣ୍ଡ ଇଚ୍ଛାଶକ୍ତି ଏବଂ ସମ୍ପୂର୍ଣ୍ଣ ତାଙ୍କର ସ୍ୱାଧୀନ ଚିତ୍ତବୃତ୍ତି ପାଖରେ ସେତିକି ମୁଣ୍ଡ ନଇଁ ଆସେ, ସେତିକି ତାର ଶ୍ରଦ୍ଧା ବଢ଼ିଯାଏ ।

କିନ୍ତୁ ସବୁଠାରୁ ଦୁଃଖଦାୟକ କଥାଟି ହେଲା ତାଙ୍କ ପରି ଅସମ୍ଭବ ଦୁଃସାହସିକ ବ୍ୟକ୍ତିଙ୍କର ଶେଷ ଜୀବନରେ ସାଂଘାତିକ ସ୍ମୃତିଭ୍ରମ ହୁଏ । ଅଥଚ ସେଇ ୧୯୬୩ ମସିହାଠାରୁ ଆଜିଯାଏ ତାଙ୍କ ଉପରେ ଅଳ୍ପ କିଛି ଆବେଗମୟ ଲେଖାଛଡ଼ା ଅନ୍ୟ କିଛି ଯୁକ୍ତିବାଦୀ ଲେଖା ପ୍ରକାଶ ପାଇନାହିଁ ।

ବରୋଦାର ଏମ୍.ଏସ୍. ବିଶ୍ୱବିଦ୍ୟାଳୟର ଗୋଟିଏ ତ୍ରୟମାସିକ ସାହିତ୍ୟ ପତ୍ରିକାରେ ଡ଼ଃ. ବାସୁଦେବ ଶରଣ ଅଗ୍ରୱାଲ ତାଙ୍କ ସମ୍ପର୍କରେ ଯାହା ଲେଖିଛନ୍ତି ତାହାହିଁ ଏକମାତ୍ର ଉଲ୍ଲେଖଯୋଗ୍ୟ ଲେଖା ।

ରାହୁଳଙ୍କ ବ୍ୟକ୍ତିତ୍ୱ ଥିଲା ବେଶ୍ ଚିତ୍ତାକର୍ଷକ - ମନେରଖିବା ଭଳି । ତିବ୍‌ବତରୁ ବହୁ ମୂଲ୍ୟବାନ୍ ଓ ଦୁର୍ଲଭ ପାଣ୍ଡୁଲିପି, ଚିତ୍ର ଓ ପୋଥି ସବୁ ସଂଗ୍ରହ କରି ରାହୁଳ ଯେତେବେଳେ ଭାରତକୁ ଫେରି ଆସିଲେ ସେତେବେଳେ ସୁପ୍ରସିଦ୍ଧ ଐତିହାସିକ କାଶୀ ପ୍ରସାଦ ଜୟସୁଆଲ 'ମଡ଼ର୍ଣ୍ଣ ରିଭ୍ୟୁ' ପତ୍ରିକାରେ ତାଙ୍କ ପୁସ୍ତକରେ ଲେଖିଥିଲେ । ଏହି ଲେଖାରେ ସେ ଭଗବାନ୍

ବୁଦ୍ଧଙ୍କ ରୂପ ଓ କାନ୍ତି ସହିତ ରାହୁଲଙ୍କ ଚେହେରାର ତୁଳନା କରିଛନ୍ତି । ଅମୃତ ରାୟ ଲେଖିଛନ୍ତି "ପ୍ରାୟ ଛଅ ଫୁଟ ଲମ୍ବା, ଉନ୍ନତ ଲଲାଟ, ପ୍ରସାରିତ ବକ୍ଷ ଓ ଚଉଡ଼ା ସ୍କନ୍ଧ ଥିବା ରାହୁଲଙ୍କ ଗଠନ ଥିଲା ଜଣେ ପ୍ରାଚୀନ ଆର୍ଯ୍ୟଙ୍କ ପରି ।" ରାହୁଲଙ୍କ ରୂପକାନ୍ତିକୁ ହିନ୍ଦୀ ସାହିତ୍ୟିକମାନେ ବିଭିନ୍ନ ଉପମାରେ ଭୂଷିତ କରିଛନ୍ତି । **ଭଗବତ ଶରଣ ଉପାଧ୍ୟାୟ ତାଙ୍କୁ ସ୍ତମ୍ଭ ସହିତ, ଠାକୁର ପ୍ରସାଦ ସିଂ ତାଙ୍କୁ ବଟବୃକ୍ଷ ସହିତ ଏବଂ ବିଦ୍ୟାନିବାସ ମିଶ୍ର** ତାଙ୍କର ତୁଳନା ଦେବାକୁ ଯାଇ ଲେଖିଛନ୍ତି – ରାହୁଲ ହିମାଳୟ ବିଷୟରେ ଖୁବ୍ ଆଗ୍ରହୀ ଥିଲେ ଏବଂ ହିମାଳୟକୁ ଯାଇଥିଲେ ମଧ୍ୟ, ଏବଂ ମନେହୁଏ ତାଙ୍କ ସ୍ୱରୂପ ସେଇ ହିମାଳୟ ସଙ୍ଗେ ଏକାକାର ହୋଇଯାଇଛି । ତାଙ୍କର ମେଧା ଓ ହୃଦୟବତ୍ତା ଥିଲା ପ୍ରଶଂସନୀୟ । ସେ ଥିଲେ ଉଦାର ଓ ମାନବତାବାଦୀ ଏବଂ ଥିଲେ ମୁଖ୍ୟତଃ ଐତିହ୍ୟ-ବିରୋଧୀ ।

ଉତ୍ତର ପ୍ରଦେଶର ଆଜମଗଡ଼ ଜିଲ୍ଲାର ଗୋଟିଏ ଛୋଟ ଗ୍ରାମର ପୁରାତନ 'ସରଯୁ ପାରୀଣ' ବ୍ରାହ୍ମଣ ପରିବାରରେ ତାଙ୍କର ଜନ୍ମ । ଅତି ପିଲାକାଳୁ ତାଙ୍କର ଶିକ୍ଷାପ୍ରତି ଏତେ ଆସକ୍ତି ବୃଦ୍ଧି ପାଇଥିଲା ଯେ ସେ ଗ୍ରାମରେ କୌଣସି ସୁବିଧା ନପାଇ ଗାଁ ଛାଡ଼ି ବାହାରକୁ ଚାଲି ଯାଇଥିଲେ । ତାଙ୍କର ପ୍ରକୃତ ନାମ ଥିଲା 'କେଦାର ନାଥ ପାଣ୍ଡେ' । ପାରିବାରିକ ପରମ୍ପରାକୁ ଛାଡ଼ି ନ ପାରି ସେ ବାରାଣାସୀ ଆସି ସେଠି ବିଦ୍ୟାଳୟରେ ସଂସ୍କୃତ, ଆରବୀ ଓ ପାର୍ଶୀ ଭାଷା ଶିକ୍ଷା କଲେ । ତା ପରେ ନିଜ ଚେଷ୍ଟାରେ ସେ ତିରିଶଟି ଭାଷା ଶିକ୍ଷା କଲେ । ତା ପରେ ସେ ତାଙ୍କର ନିଜ ନାଁ ଓ ଧର୍ମ ବଦଳ କରି ଆର୍ଯ୍ୟ ସମାଜରେ ଯୋଗ ଦେଇ ନିଜକୁ 'ବାବା ରାମଉଦାରଦାସ' ନାମରେ ଜଣେ ଭ୍ରାମ୍ୟମାଣ ସନ୍ୟାସୀ ଭାବରେ ପରିଚିତ କରାଇଲେ । ପରେ ସେ ପୀତ ବସ୍ତ୍ର ପରିଧାନ କରି ବୌଦ୍ଧ ଭିକ୍ଷୁ ବେଶରେ ନେପାଳ ଓ ଶ୍ରୀଲଙ୍କା ଗଲେ । ସେଠାରେ ସେ ପାଲୀ, ସିଂହଳୀ ଓ ତିବ୍ବତି ଭାଷାର ବୌଦ୍ଧଗ୍ରନ୍ଥ ପଢ଼ିଲେ ଓ 'ମହାପଣ୍ଡିତ' ଓ 'ତ୍ରିପିଟକାଚାର୍ଯ୍ୟ' (ଯେ ଥେରବାଦୀ ବୌଦ୍ଧଧର୍ମର ତିନିଟି 'ପିଟକ' ସମ୍ପର୍କରେ ବିଶେଷ ଜ୍ଞାନ ଲାଭ କରି ଥାଆନ୍ତି) ଉପାଧି ପାଇଲେ ।

ତା ପରେ ଜଣେ ମୌନ ସାଧୁ ବେଶରେ ନିଜ ଜୀବନକୁ ବାଜି ରଖି ଲାମାମାନଙ୍କର ଅତ୍ୟନ୍ତ ଦୁର୍ଗମ ଅଞ୍ଚଳକୁ ଯାତ୍ରା କଲେ । ସେ ଇଉରୋପ ଯାଇଥିଲେ ବୌଦ୍ଧ ପ୍ରଚାରକ ହିସାବରେ । ସେଠି ତାଙ୍କ ସହିତ ଜଣେ ପ୍ରାଚ୍ୟବିଦ୍ୟା ବିଶାରଦଙ୍କ ସହିତ ସାକ୍ଷାତ ହେଲା । କିନ୍ତୁ ପରେ ତାଙ୍କୁ ଆଉ ଇଉରୋପ କେବେ ଆକର୍ଷଣ କରି ନ ଥିଲା । ଏପରିକି ବୌଦ୍ଧ ଧର୍ମର ପ୍ରଚାର ପାଇଁ ଆମେରିକାର ନିମନ୍ତ୍ରଣକୁ ମଧ୍ୟ ସେ ପ୍ରତ୍ୟାଖ୍ୟାନ କରିଥିଲେ ।

ଜୀବନର ଠିକ୍ ଏଇ ପ୍ରକାର ଗୋଟିଏ ଅବସ୍ଥାରେ ସେ ମାର୍କ୍ସବାଦ ପ୍ରତି ଆକୃଷ୍ଟ

ହେଇପଡିଥିଲେ । ୧୯୩୫ ମସିହାରେ ସେ ଋଷିଆରୁ ଫେରି ମାର୍କ୍ସବାଦ ଉପରେ ପ୍ରଚାର କରିବାକୁ ଆରମ୍ଭ କଲେ । ତା ପରେ ସେ ଯୋଗ ଦିଅନ୍ତି 'କିଶାନ ସଭା' ଓ 'ଭାରତୀୟ ଜାତୀୟ କଂଗ୍ରେସ'ରେ ।

୧୯୩୭, ୧୯୪୪ ଓ ୧୯୬୨ରେ ରାହୁଲ ସୋଭିଏତ ଋଷିଆ ଗସ୍ତ କରିଥିଲେ । କିନ୍ତୁ ଦୁର୍ଭାଗ୍ୟ ଯେ ସେ ଶେଷଥର ଋଷିଆ ଯାଇଥିଲେ ନିଜର ଚିକିତ୍ସା ପାଇଁ। ପରେ ସେ ସେଠୁ ସମ୍ପୂର୍ଣ୍ଣ ମତିଭ୍ରଷ୍ଟ ହେଇ ନିଜ ଦେଶକୁ ଫେରି ଆସନ୍ତି ।

୧୯୩୯ ମସିହା ଅକ୍ଟୋବର ୧୯ ତାରିଖରେ ସେ ମୁଙ୍ଗେର ଜିଲ୍ଲାର କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇ ଦୀର୍ଘ ନଅ ବର୍ଷ ଧରି ସେ ପାର୍ଟିର କାମ କରିଛନ୍ତି । କିନ୍ତୁ ୧୯୪୮ ମସିହା ଜାନୁଆରୀ ମାସରେ ସେ ବମ୍ବେରେ ଅନୁଷ୍ଠିତ ହିନ୍ଦୀ ସାହିତ୍ୟ ସମ୍ମେଳନରେ ସଭାପତିତ୍ୱ କରି ଭାଷଣ ଦେଇଥିବାରୁ ତାଙ୍କୁ ପାର୍ଟିରୁ ବହିଷ୍କାର କରାଯାଇଥିଲା।

ସାରା ଜୀବନ ସେ ଥିଲେ ଭ୍ରାମ୍ୟମାଣ । ସାରା ଜୀବନ ଗୋଟିଏ ମତରୁ ଅନ୍ୟ ମତକୁ ଯାଇ ସେ ନିଜକୁ ପରୀକ୍ଷା କରିଛନ୍ତି । ପ୍ରକୃତରେ ପାର୍ଥିବ ଜୀବନର ଦୁଃଖ ଯନ୍ତ୍ରଣା ହାତରୁ ମୁକ୍ତି ପାଇବା ପାଇଁ ସେ କେବଳ ଗୋଟିଏ ମତ ଛାଡ଼ି ଅନ୍ୟ ମତକୁ ଆଦରି ନେଇଛନ୍ତି । ସାରା ଜୀବନ ସେ କେବଳ ପରମ ଶାନ୍ତି ହିଁ ଖୋଜିଛନ୍ତି ।

୧୯୦୩ ମସିହାରେ ମାତ୍ର ଦଶ ବର୍ଷ ବୟସରେ ସେ ଘରଛାଡ଼ି ବାରାଣାସୀ ଚାଲି ଯାଇଥିଲେ । ତା ପରେ ୧୯୦୭ ଓ ୧୯୦୯ ମସିହାରେ ସେ ଦୁଇଥର କଲିକତା ଆସନ୍ତି ନିଜ ରୋଜଗାରରେ ଚଳିଲା ଭଳି କ୍ଷମତା ଅର୍ଜନ କରିବାକୁ ।

୧୯୧୦ ମସିହାରେ ତାଙ୍କର ଯାତ୍ରା ଆରମ୍ଭ ହୁଏ ହିମାଳୟକୁ । ପ୍ରଥମେ ଦଳେ ସାଧୁଙ୍କ ସହିତ ଓ ପରେ ଏକା ଏକା ସେ ସମଗ୍ର ଭାରତବର୍ଷ ଭ୍ରମଣ କରନ୍ତି । ଦୀର୍ଘ ଏଗାର ବର୍ଷ ଧରି ସେ ଛୋଟ ବଡ଼ ଗ୍ରାମ, ସହର ବୁଲିଛନ୍ତି । ସେ ମଧ୍ୟ ଯାଇଛନ୍ତି କାଶୀ, ପରସା, ତିରୁପତି, କାଞ୍ଚିପୁରମ, ବାଙ୍ଗାଲୋର, ବିଜୟ ନଗର, ତିରୁମିଶି, ତ୍ରିୟାମ୍ବାକ, ଉଜ୍ଜୟିନୀ, ଅହମଦାବାଦ, ଅଯୋଧ୍ୟା, ଆଗ୍ରା, ଲାହୋର ଓ କୁର୍ଗ ଇତ୍ୟାଦି ।

୧୯୨୬ ମସିହାରେ ପୁଣି ହିମାଳୟ, ତିବ୍‌ବତ, ବୁଶହର ଷ୍ଟେଟ, ସୁମନାମ, କାନାମ, ସିତି ପ୍ରଭୃତି ଅନେକ ସ୍ଥାନ ସେ ବୁଲିଛନ୍ତି ।

ରାହୁଲଙ୍କର ବିଦେଶ ଯାତ୍ରା ଆରମ୍ଭ ହୁଏ ୧୯୨୩ ମସିହାରେ । ପ୍ରଥମ ଯାତ୍ରା ଆରମ୍ଭ ହୁଏ ନେପାଳ, ୧୯୨୭ରେ ଶ୍ରୀଲଙ୍କା, ୧୯୩୦ରେ ସେ 'ରାମ ଉଦାର ଦାସ' ନାମ ଛାଡ଼ି 'ରାହୁଲ ସଂକୃତାୟନ' ନାମ ଗ୍ରହଣ କରନ୍ତି । ଅବଶ୍ୟ ଏଇ ନାମଟିକୁ ସେ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ରଖନ୍ତି । ତିବ୍‌ବତ ସେ ଯାଇଛନ୍ତି ଚାରିଥର । ତାଙ୍କର ସବୁ ଯାତ୍ରା ଭିତରୁ ତିବ୍‌ବତ ଯାତ୍ରା ହିଁ ଥିଲା ବେଶୀ ଦୁର୍ଗମ ଓ କଷ୍ଟସାଧ୍ୟ ।

୧୯୩୨ରେ ଇଉରୋପ ଯାଇ ସେଠୁ ଜର୍ମାନୀ, ଫ୍ରାନ୍ସ ଓ ଇଂଲଣ୍ଡ ଯାଇ ସେଠାକାର ଜନ ଜୀବନ ବିଷୟରେ ଅନୁଧ୍ୟାନ କରନ୍ତି । ତା ପରେ ସେ ଋଷିଆର ଲେନିନଗ୍ରାଡ଼ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା ଆରମ୍ଭ କରନ୍ତି ଏବଂ ସେଇ ସମୟ ଭିତରେ ସେ ମଧ୍ୟଏସିଆରେ ସୋଭିଏତ ଗଣତନ୍ତ୍ରର ପ୍ରଭାବ ଉପରେ ଅଧିକ ଅଧ୍ୟୟନ କରନ୍ତି ।

ପରେ ସେ 'ମଧ୍ୟଏସିଆକା ଇତିହାସ' ବା ମଧ୍ୟଏସିଆର ଇତିହାସ ନାମରେ ଖଣ୍ଡିଏ ଗ୍ରନ୍ଥ ରଚନା କରନ୍ତି । ଏହି ବହିଟି ୧୯୫୮ ମସିହାରେ ହିନ୍ଦୀ ଭାଷାର ଶ୍ରେଷ୍ଠ ରଚନା ହିସାବରେ ସାହିତ୍ୟ ଏକାଡ଼େମୀର ପୁରସ୍କାର ପାଏ । ରାହୁଲ ମଧ୍ୟ ପ୍ରାଚ୍ୟ ଏବଂ ସୁଦୂର ପ୍ରାଚ୍ୟର ଅନେକ ଦେଶ ଭ୍ରମଣ କରିଥିଲେ । ଜାପାନ, କୋରିଆ ଓ ଚୀନ୍ ଦେଶକୁ ମଧ୍ୟ ଯାଇଥିଲେ । ୧୯୦୭ରୁ ୧୯୬୩ ପର୍ଯ୍ୟନ୍ତ ତାଙ୍କର ସମଗ୍ର ଜୀବନ ଥିଲା ଏକ ନିରବଚ୍ଛିନ୍ନ ଭ୍ରମଣ କାହାଣୀ । ତାଙ୍କର ଏଇ ପର୍ଯ୍ୟଟନ ଜୀବନରୁ ସେ ଜୀବନ ଦର୍ଶନ ପାଇଥିଲେ ଏବଂ ସେଇ ଅଭିଜ୍ଞତାରୁ 'ଘୁମକ୍କଡ଼ ଶାସ୍ତ୍ର' (ପୃଥିବୀ ଭ୍ରମଣ) ନାମରେ ଖଣ୍ଡେ ବହି ଲେଖନ୍ତି ।

ରାହୁଲ ବୋଧହୁଏ ମାତ୍ର ଅଳ୍ପ କେତେ ବର୍ଷ ବୈବାହିକ ଜୀବନ ଅତିବାହିତ କରିଥିଲେ । ପ୍ରଥମେ ଲେନିନଗ୍ରାଡ଼ରେ 'ଲୋଲା' ନାମରେ (ଏଲେନ ସ୍ନାର୍ଟୋଲନା ସଂକୃତାୟନ) ଜଣେ ବିଦୁଷୀଙ୍କୁ ବିବାହ କରିଥିଲେ । ସେଠି ପୁତ୍ର ଇଗୋ ଜନ୍ମ ହେଇଥିଲା । କିନ୍ତୁ ରାହୁଲଙ୍କ ସହିତ ମାଆ ଓ ପୁଅ କେହି ଭାରତକୁ ଆସିବାକୁ ରାଜି ହେଇ ନ ଥିଲେ । ପରେ ରାହୁଲ ଜଣେ ନେପାଳୀ ମହିଳା ଡ଼. କମଳା ସଂକୃତାୟନଙ୍କୁ (ପୂର୍ବନାମ କମଳା ପେରିଆର) ବିବାହ କରନ୍ତି ଏବଂ ମଶୌରୀରେ କିଛି ଦିନ ଅବସ୍ଥାନ କରନ୍ତି । ସେଠି କନ୍ୟା ଜୟା ଓ ପୁତ୍ର ଜେତାର ଜନ୍ମ ହୁଏ । ତା ପରେ ପୁଣି ସେ ଶ୍ରୀଲଙ୍କା ବିଶ୍ୱବିଦ୍ୟାଳୟରୁ ନିମନ୍ତ୍ରଣ ପାଇ ବୌଦ୍ଧ ଅଧ୍ୟାପକ ରୂପେ ଯୋଗ ଦିଅନ୍ତି ଏବଂ ଅଳ୍ପ କିଛି ଦିନ ପରେ ଅତି ଗୁରୁତର ଭାବେ ଅସୁସ୍ଥ ହୋଇ ପଡ଼ନ୍ତି । ସେ ବହୁମୂତ୍ର, ରକ୍ତଚାପ ଏବଂ ହୃଦରୋଗରେ ଆକ୍ରାନ୍ତ ହୋଇ ପଡ଼ନ୍ତି ଏବଂ ତା ପରେ ଜୀବନର ଶେଷ ଦୁଇବର୍ଷ ସେ ସମ୍ପୂର୍ଣ୍ଣ ମତିଭ୍ରଷ୍ଟ ହୋଇ ପଡ଼ନ୍ତି । ୧୯୬୩ ମସିହାରେ ଦାର୍ଜିଲିଂରେ ତାଙ୍କର ମୃତ୍ୟୁ ହୁଏ । ଯେଉଁଠି ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହେଇଥିଲା, ସେଠାରେ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ରାହୁଲ ସ୍ମୃତି ସ୍ତମ୍ଭ ସ୍ଥାପିତ ହୁଏ ।

ଯେତେବେଳେ ସେ ପ୍ରାଥମିକ ବିଦ୍ୟାଳୟରେ ଉର୍ଦ୍ଦୁ ଶିଖୁଥିଲେ ସେତେବେଳେ ନବାଜିନ୍ଦା ବାଜିନ୍ଦାର 'ଖୁଦରାଇ ବା ନତୀଜା' ବହିରେ ଯୋଉ ଗଳ୍ପଟି ସେ ପଢ଼ିଥିଲେ ସେଇ ଗଳ୍ପର ଦୁଇଟି ସ୍ତବକ ତାଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । ତାଙ୍କ ଆତ୍ମ ଜୀବନୀରେ ସେ ସେଇ କାହାଣୀର ଦୁଇ ସ୍ତବକକୁ ବାରମ୍ବାର ଉଦ୍ଧାର କରିଛନ୍ତି । "ସୈରକର ଦୁନିଆ କି

ଗାଫିଲ ଜିନ୍ଦାଗାନୀ ଫିର୍ କାହାଁ / ଜୀନ୍ଦଗୀ ଗର କୁଛୁ ରହୀ ତୋ ନୌଜୋଆନୀ ଫିର୍ କାହାଁ ।" ଅର୍ଥାତ୍ 'ରେ ମୂର୍ଖ ଆଳସ୍ୟ! ଦୁନିଆଟାକୁ ବୁଲି ବୁଲି ଦେଖ । ତା ପରେ ତୁ ଆଉ ଜୀବନ ପାଇବୁନି । ଯଦି ବେଶୀ ଦିନ ବଞ୍ଚୁ । ତୋର ଯୌବନ ଫେରି ଆସିବ ନାହିଁ ।' ଏଇଟା ଥିଲା ତାଙ୍କ ଜୀବନାଦର୍ଶ । ପ୍ରକୃତରେ "ଚରୈବତୀ" ମନ୍ତ୍ରରେ ସେ ଥିଲେ ଦୀକ୍ଷିତ ।

ସଂସାର ଓ ଆତ୍ମତୃପ୍ତି ପାଇଁ ରାହୁଲ କେବେ ନିଜକୁ ବଂଧନ ଭିତରେ ରଖିବାକୁ ଚାହିଁ ନଥିଲେ । ସେ ସବୁବେଳେ ଗତିଶୀଳ, ଚଞ୍ଚଳ - ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ, ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ, ଗୋଟିଏ ଭାଷାରୁ ଅନ୍ୟ ଭାଷାକୁ - ସାରା ଜୀବନ ସେ ଏମିତି ଘୂରି ବୁଲିଚନ୍ତି । ସ୍ଥବିରତାର ବିରୁଦ୍ଧାଚରଣ ସେ ବରାବର କରି ଆସିଛନ୍ତି । ତା ସହିତ ଜ୍ଞାନ ପିପାସା ଥିଲା ତାଙ୍କର ଅପରିସୀମ ।

ଏଇ ପୁସ୍ତକର ଲେଖକ ଯେତେବେଳେ ୧୯୪୮ ମସିହାରେ ରାହୁଲଙ୍କ ସହିତ ଏଲାହାବାଦ ହିନ୍ଦୀ ସାହିତ୍ୟ ଭବନରେ ୧୬ ହଜାର ଶବ୍ଦର ଗୋଟିଏ ଇଂରାଜୀ - ହିନ୍ଦୀର "ଶାସନ ଶବ୍ଦ କୋଷ" ଅଭିଧାନ ସଂପାଦନା କରୁଥିଲେ ସେତେବେଳେ ଜଣେ ବ୍ୟକ୍ତି ରାହୁଲଙ୍କୁ ଏ ବିଷୟରେ ସମାଲୋଚନା କରିବା ଫଳରେ ସେ ଆଉ ସେ ଅଭିଧାନକୁ ଶେଷ କରି ନଥିଲେ ।

ଏହା ପରେ କୌଣସି ଜଣେ ସତ୍ ବ୍ୟକ୍ତିର ସହାନୁଭୂତି ପୂର୍ଣ୍ଣ ଉପଦେଶର ଉତ୍ତରରେ ସେ କହିଲେ, ବୁଦ୍ଧ କହିଛନ୍ତି "ସବୁ କ୍ଷଣିକ, କୌଣସିଟି ସ୍ଥାୟୀ ନୁହେଁ । ଲେନିନ ମଧ୍ୟ କହିଛନ୍ତି, "ସାମାନ୍ୟର ଅନ୍ତ ନାହିଁ, କୌଣସି ମଣିଷ ସମ୍ପୂର୍ଣ୍ଣ ନୁହେଁ, କୌଣସି ସତ୍ୟ ଉପରେ କେହି ଏକଛତ୍ର ଅଧିକାର ସାବ୍ୟସ୍ତ କରିବା ଉଚିତ ନୁହେଁ । ମୁଁ ମୋ କାମ କରିଛି । ଆଗାମୀ କାଲି ମୋର ଉତ୍ତରାଧିକାରୀ ଆସି ସେ କାମ ସମ୍ପୂର୍ଣ୍ଣ କରିବ।"

ଏଇ ସବୁ ଅବିସ୍ମରଣୀୟ ଉକ୍ତିଗୁଡ଼ିକ ପ୍ରମାଣ କରୁଛି ଯେ ରାହୁଲ ତାଙ୍କର ସୀମାବଦ୍ଧତା ସମ୍ପର୍କରେ କେତେ ସଚେତନ ଥିଲେ ।



# ଜୀବନ

ରାହୁଲଙ୍କ ପ୍ରଥମ ନାମ ଥିଲା କେଦାର ନାଥ ପାଣ୍ଡେ । ୧୮୯୩ ଏପ୍ରିଲ୍ ୯ ତାରିଖ ତାଙ୍କ ଜନ୍ମଦିନ । ପିତା ଗୋବର୍ଦ୍ଧନ ପାଣ୍ଡେ ଥିଲେ ଧର୍ମପ୍ରାଣ କୃଷକ । ମାତା କୁଳବନ୍ତୀ ତାଙ୍କ ପିତାଙ୍କ ଗ୍ରାମ ପନ୍ଦାହାରେ ବେଶୀ ଦିନ ରହୁଥିଲେ । କେଦାରଙ୍କ ଜନ୍ମ ସେଇ ଗାଁରେ। ଅଠେଇଶ ବର୍ଷ ବୟସରେ ତାଙ୍କ ମାଆଙ୍କର ଏବଂ ମାତ୍ର ପଇଁଚାଳିଶ ବର୍ଷ ବୟସରେ ତାଙ୍କ ବାପାଙ୍କ ମୃତ୍ୟୁ ହୁଏ । ତେଣୁ କେଦାରଙ୍କ ଲାଳନ ପାଳନ ଦାୟିତ୍ୱ ନ୍ୟସ୍ତ ଥିଲା ସ୍ନେହଶୀଳା ମାତମହୀଙ୍କ ଉପରେ । ତାଙ୍କ ପିଲା କାଳର ଅପାସୋରା ସ୍ମୃତି ଥିଲା ୧୮୯୭ ସାଲର ଦୁର୍ଭିକ୍ଷ ।

୧୮୯୮ ମସିହା ନଭେମ୍ବର ମାସରେ ମଦ୍ରାସା ପ୍ରାଥମିକ ବିଦ୍ୟାଳୟରେ ତାଙ୍କର ଶିକ୍ଷାରମ୍ଭ ହେଇଥିଲା । ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ ହେଇଥିଲା ଉର୍ଦ୍ଦୁ ବର୍ଣ୍ଣମାଳା ମାଧ୍ୟମରେ । ଖେଳାଖେଳିରେ ତାଙ୍କ ମନ କେବେବି ନଥିଲା । ବିଦ୍ୟାଳୟର ସହପାଠୀମାନେ ଥିଲେ ସୟଦ ଓ ସିଆ ମୁସଲମାନମାନେ । ରାଣୀସରାର ଲୋଅର ପ୍ରାଇମେରୀ ସ୍କୁଲରେ ଶିକ୍ଷକ ବାବୁ ପଓର ସିଂ ଯେ କି ଛାତ୍ରମାନଙ୍କୁ ସବୁଠାରୁ ବେଶୀ ପିଟାପିଟି କରୁଥିଲେ, ତାଙ୍କୁ ସେ ମନେ ରଖିଥିଲେ ଅନେକ ଦିନ । ରାହୁଲ ତାଙ୍କର ଆତ୍ମଜୀବନୀର ପ୍ରଥମ ଖଣ୍ଡରେ ଦ୍ୱିତୀୟ ପରିଶିଷ୍ଟରେ ପ୍ରାୟ ପଚାଶ ପୃଷ୍ଠା ଭିତରେ ବୈଦିକ ଯୁଗରୁ ଆରମ୍ଭ କରି ତାଙ୍କର ନିଜର ଗୋତ୍ର ଓ ବଂଶ ପରିଚୟ ଲେଖିଚନ୍ତି । ତାଙ୍କ ପିତାମହ ରାମଶରଣ ପାଠକ ଯେ ଅଦ୍‌ଭୁତ ପ୍ରକୃତିର ଲୋକ ଥିଲେ ଏ କଥା ଉଲ୍ଲେଖ କରି ସେ ଲେଖାଟିକୁ ଶେଷ କରିଚନ୍ତି । ସେ ତାଙ୍କ ବାପାଙ୍କ ସମ୍ପର୍କରେ ମଧ୍ୟ ଲେଖିଚନ୍ତ କିପରି ତାଙ୍କ ପରି ଜଣେ ବାରବୁଲା ବାଳକଟିକୁ ଘରମୁହାଁ କରିବା ପାଇଁ

ଆପ୍ରାଣ ଚେଷ୍ଟା କରିଥିଲେ । ରାହୁଲ ଯେତେବେଳେ ଖୁବ ଛୋଟ ଥିଲେ ସେତେବେଳେ ତାଙ୍କର ଏକମାତ୍ର ଭଉଣୀର ମୃତ୍ୟୁ ହୋଇଥିଲା । ରାହୁଲଙ୍କ ବିବାହ ମଧ୍ୟ ଅଳ୍ପ ବୟସରେ ହୋଇଥିଲା। କୁହାଯାଇ ପାରେ ଯେ ଏହି ପ୍ରଥମ ପତ୍ନୀଙ୍କ ସହିତ ତାଙ୍କର ସାକ୍ଷାତ କେବେ ହୋଇ ନାହିଁ । ମାତ୍ର ନଅ ବର୍ଷ ବୟସରେ ସେ ଘରଛାଡ଼ି ବାରାଣାସୀ ପଳାଇ ଯାଆନ୍ତି ଏବଂ ଚଉଦ ବର୍ଷ ବୟସରେ ସେ ଆସନ୍ତି କଲିକତାକୁ। କିନ୍ତୁ କାହିଁକି ଯେ ସେ ବାରମ୍ବାର ଘର ଛାଡ଼ି ପଳାଇ ଯାଆନ୍ତି ତାର ସଠିକ କାରଣ ଜଣା ପଡ଼େନି । ଏ ବିଷୟରେ ସେ କେବଳ ଲେଖିଛନ୍ତି ଯେ ଏ ବିଶାଳ ପୃଥିବୀରେ ଜାଣିବାର ଇଚ୍ଛା ଏବଂ ଜ୍ଞାନ ଅର୍ଜନର ଇଚ୍ଛା ଥିଲା ତାଙ୍କର ଅତି ପ୍ରବଳ । କିନ୍ତୁ କଲିକତା ପରି ମହାନଗରରେ ହତାଶ ହୋଇ ସେ ପୁଣି ତାଙ୍କ ଗାଁକୁ ଫେରି ଯାଆନ୍ତି । ୧୯୦୬ ମସିହାରେ ସେ ପୁଣି କଲିକତା ଆସନ୍ତି ଏବଂ ଗୋଟାଏ ଗୁଡ଼ାଖୁ ଦୋକାନରେ ସହକାରୀର କାମ କରନ୍ତି । କିନ୍ତୁ ସେଠି ସେ ନିଜେ ନିଶା ମିଶା ମିଠାଇ ଖାଇ ଅଜ୍ଞାନ ହୋଇ ପଡ଼ନ୍ତି । ସେତେବେଳେ ତାଙ୍କୁ ମେଡ଼ିକାଲ କଲେଜ ହସପିଟାଲରେ ଭର୍ତ୍ତି କରାହୋଇଥିଲା ।

୧୯୧୦ ମସିହାରୁ ରାହୁଲ ଭ୍ରମଣ ପ୍ରତି ବେଶୀ ଆଗ୍ରହୀ ହୋଇଉଠିଲେ । ସେଥିପାଇଁ ଆବଶ୍ୟକ ହେଉଥିବା ଶିକ୍ଷା କିମ୍ବା ଜୀବିକାର୍ଜନ ପାଇଁ ଜ୍ଞାନ ଅର୍ଜନର ଆଶା ସେ ତ୍ୟାଗ କରି ସାରିଥିଲେ । ବରଂ ୧୯୧୦ ମସିହାରେ ଜଣେ ଭ୍ରାମ୍ୟମାଣ ସନ୍ୟାସୀର ଜୀବନ ଗ୍ରହଣର ଇଚ୍ଛା ହିଁ ତାଙ୍କ ଭିତରେ ପ୍ରବଳ ହୋଇ ଉଠିଥିଲା । ତାଙ୍କର ସ୍ୱଭାବ ଥିଲା ଅନ୍ତର୍ମୁଖୀ ଓ ସଂବେଦନଶୀଳ । ମୂଳ ସଂସ୍କୃତରେ ବେଦାନ୍ତ ପାଠର ଆକାଂକ୍ଷା ତାଙ୍କର ଥିଲା ପ୍ରବଳ । ଏବଂ ଏଇ ସମୟରେ ଯେତେବେଳେ ଗୃହ ତ୍ୟାଗ କରି ସାଧୁସଂଗରେ ଲିପ୍ତ ହୋଇ ଯାଆନ୍ତି ସେତେବେଳେ ତାଙ୍କ ମନରେ କାମ କରିବାର ଇଚ୍ଛା କିମ୍ବା ଅର୍ଥ ଉପାର୍ଜନର ଲାଳସା କିମ୍ବା ଏପରିକି ପାର୍ଥିବ ଭୋଗ ବିଳାସ ପ୍ରତି କୌଣସି ଆସକ୍ତି ନଥିଲା । ତାଙ୍କ ହୃଦୟ ସେତେବେଳେ ଥିଲା ଜଗତ ଓ ଜୀବନ ପ୍ରତି ବୈରାଗ୍ୟମୟ ଓ ନିର୍ମୋହ । ତେଣୁ ପାର୍ଥିବ ଚିନ୍ତା ନୁହେଁ, ଆଧ୍ୟାତ୍ମଚେତନା ଦ୍ୱାରା ସେ ବେଶୀ ଆକୃଷ୍ଟ ହୋଇପଡ଼ନ୍ତି । ଅନ୍ୟ ଦିଗରେ ସାଧୁସଂଗ ତାଙ୍କୁ ଅନ୍ଧବିଶ୍ୱାସ ଓ ସ୍ତାବକତା ବିରୁଦ୍ଧରେ ଜଣେ ସମାଲୋଚକରେ ପରିଣତ କରିଦେଲା । ଫଳରେ ସେ ନାସ୍ତିକ ଓ ଜଡ଼ବାଦରେ ବିଶ୍ୱାସୀ ହୋଇ ପଡ଼ିଲେ । ତେବେ ଏଇ ବିଶ୍ୱାସରେ ପହଞ୍ଚିବାକୁ ତାଙ୍କୁ ଯଥେଷ୍ଟ ସମୟ ଲାଗିଥିଲା ଓ ସେ ଏକ କଠିନ ସମୟ ଭିତର ଦେଇ ଅତିକ୍ରମ କରିଥିଲେ ।

ପ୍ରଥମ ବୟସରେ ସେ ରୋଷେଇ କରିବା ଜାଣି ନଥିଲେ । ତେଣୁ ସେ ସେତେବେଳେ ପ୍ରାୟ ଭିକ୍ଷା ଉପରେ ହିଁ ନିର୍ଭର କରୁଥିଲେ । ପାଦରେ ଚାଲି ଚାଲି ସେ ଅଯୋଧ୍ୟା ଓ ମୋରଦାବାଦ ଯାଏ ଯାଉଥିଲେ । ବିନା ଟିକଟରେ ସେ ହରିଦ୍ୱାର ମଧ୍ୟ ଯାଇଥିଲେ । ହିମାଳୟ ପ୍ରତି ତାଙ୍କର ଆକର୍ଷଣ ଥିଲା ପ୍ରବଳ । ହରିଦ୍ୱାର ପହଞ୍ଚି ସେ ତାଙ୍କର ବିଦ୍ୟାଳୟ ସହପାଠୀ ଯୋଗେଶଙ୍କୁ ଗଦ୍ୟ କବିତାରେ ସଂକେତ ଦେଇ ଖଣ୍ଡେ ପୋଷ୍ଟକାର୍ଡ଼ ଲେଖିଥିଲେ ।

ହୃଷିକେଶ ଓ ଦେବ ପ୍ରୟାଗ ଦେଇ ସେ ବିପଦ ସଂକୁଳ ପର୍ବତମାଳା ଭିତର ଦେଇ ଯାଇ ବଦ୍ରିନାଥ - କେଦାରନାଥ ଓ ଯମୁନେତ୍ରୀ ଓ ଗଙ୍ଗୋତ୍ରୀ ପର୍ଯ୍ୟନ୍ତ ଚାଲି ଚାଲି ଯାଆନ୍ତି । ବହୁ ରକମର ସାଧୁ ସନ୍ୟାସୀଙ୍କ ସାଥିରେ ମିଶି ସେ ଗଂଜେଇ ଖାଇଥିଲେ ମଧ୍ୟ ସେ କେବେ ନିଶାସକ୍ତ ହେଇ ପଡ଼ି ନାହାନ୍ତି । ଏପରିକି ୧୯୪୮ ଜାନୁଆରୀ ୩୦ ତାରିଖରେ ମହାତ୍ମାଗାନ୍ଧୀଙ୍କ ହତ୍ୟା ପରେ ସେ ଜୀବନରେ ଆଉ କେବେ ନିଶା ସେବନ କରିବେ ନାହିଁ ବୋଲି ଶପଥ ନେଇଥିଲେ ଏବଂ ତାକୁ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ପାଳନ କରିଥିଲେ । ତା ସତ୍ତ୍ୱେ ସେ ତାଙ୍କର ବୈଜ୍ଞାନିକ ଭୌତିକବାଦ' ବହିରେ (ବିଜ୍ଞାନ ସମ୍ମତ ଜଡ଼ବାଦ) ମହାତ୍ମାଗାନ୍ଧୀଙ୍କୁ ପୁଞ୍ଜିବାଦୀଙ୍କ ଦଲାଲ ବୋଲି ତୀବ୍ର ସମାଲୋଚନା କରିଛନ୍ତି । ଆମିଷ ତାଙ୍କର ପ୍ରିୟ ଖାଦ୍ୟ ଥିଲେ ମଧ୍ୟ ସେ କେବେବି ସୁରା ସ୍ପର୍ଶ କରି ନାହାନ୍ତି । ବାସ୍ତବରେ ସେ ତାଙ୍କ ସଂକଳ୍ପରେ ଥିଲେ ଅଟଳ ମହାମେରୁ । ଏବଂ ଋଜ-ବ୍ୟକ୍ତିତ୍ୱର ଜଣେ ଭିନ୍ନ ମଣିଷ ।

ମାତ୍ର ୧୭ ବର୍ଷ ବୟସରେ ତାଙ୍କର ହିମାଳୟ ଯାତ୍ରା ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ହିମାଳୟର ନିଷିଦ୍ଧ ଇଲାକାରେ ପ୍ରବେଶ କରି ବୁଲି ଦେଖିବାର ଇଛା ତାଙ୍କର ଥିଲା ଅତି ପ୍ରବଳ । ସେଠାରୁ ବାରାଣାସୀ ଯାଇ ସେଠାରେ ଚକ୍ର ପାଣି ମଠରେ ଅବସ୍ଥାନ କରନ୍ତି । ପାରିବାରିକ ପରମ୍ପରା ଅନୁସାରେ ୧୯୧୦ ମସିହାରେ ଅକ୍ଟୋବର ମାସରେ ସେ ସଂସ୍କୃତରେ 'ଲଘୁ କୌମୁଦୀ' ପଢ଼ିବା ଆରମ୍ଭ କଲେ । ବାରାଣାସୀରେ ସେ ବହୁ ସଂସ୍କୃତ ବହି ପଢ଼ିଥିଲେ । କାବ୍ୟ, ବ୍ୟାକରଣ, ଆୟୁର୍ବେଦ ଓ ଜ୍ୟୋତିଷ ଇତ୍ୟାଦି ସେ ସେଠି ଶେଷ କରିଥିଲେ । ଏପରିକି ସେଠାରେ ସେ ନାମଜପ ଓ 'ସିଦ୍ଧି' ଦ୍ୱାରା ଦେବଦେବୀଙ୍କ ଆଶୀର୍ବାଦ ପାଇବାକୁ ଚେଷ୍ଟା କରିଥିଲେ । ପାଦରେ ଚାଲି ଚାଲି ସେ ଥରେ ଚୁନାର, ମୀର୍ଜାପୁର ଓ ଆଲାହାବାଦ ମଧ୍ୟ ଯାଇଥିଲେ ।

ଉଣେଇଶ ବର୍ଷ ବୟସରେ ସେ ଏକଦା ପ୍ରଖ୍ୟାତ ସଂସ୍କୃତ ବିଶାରଦ ପଣ୍ଡିତ ରାମାବତାର ଶର୍ମାଙ୍କର ଭାଷଣ ଶୁଣିଲା ପରେ ତାଙ୍କ ଭିତରେ ବୁଦ୍ଧିବାଦର ବିକାଶ ଘଟେ । ପଣ୍ଡିତ ଶର୍ମାଙ୍କର ବିଶେଷ ପାଣ୍ଡିତ୍ୟ ସତ୍ତ୍ୱେ ସେ ବେଦ ଓ ଦେବଦେବୀଙ୍କ ଉପରେ ମୋଟ୍ ବିଶ୍ୱାସ ରଖୁ ନଥିଲେ ।

ଦୟାନନ୍ଦ ସ୍କୁଲରେ ରାହୁଳ ସପ୍ତମ ଶ୍ରେଣୀରେ ଭର୍ତ୍ତି ହେଇଥିଲେ । ସେଠି ସେ ଇଂରାଜୀ ଓ ଗଣିତ ଶିଖିଲେ । ପରେ ସ୍କୁଲ କଲେଜର ନିୟମ ଅନୁସାରେ ସେ ଆଉ ଆନୁଷ୍ଠାନିକ ଶିକ୍ଷାଲାଭ କରି ପାରିଲେ ନାହିଁ । ପରସା ମଠକୁ ଆସି ସେ ପୂରାପୂରି ସାଧୁ ହେଇଗଲେ । ସେତେବେଳେ ସେ ନିଜ ନାମ ପରିବର୍ତ୍ତନ କରି "ରାମଉଦାର ଦାସ" ହେଇଗଲେ । ଗୋଟିଏ ଦିଗରେ ମନ୍ଦିରରେ ପୂଜାପାଠ, ଆଚାର ବିଚାର, ମନ୍ତ୍ରତନ୍ତ୍ର ଉଚ୍ଚାରଣ ଏବଂ ଶୃଙ୍ଖଳିତ ଜୀବନଯାପନକୁ ସେ ସହ୍ୟ କରି ପାରୁ ନଥିଲେ । ପୁଣି ମଠ ମହନ୍ତଙ୍କର ଆରାମପ୍ରଦ ସୌଖୀନ ଜୀବନ ମଧ ତାଙ୍କ ପାଇଁ ଗ୍ରହଣ ଯୋଗ୍ୟ ହେଲା ନାହିଁ ।

ସେଠାରେ ଅବସ୍ଥାନ କାଳରେ ଫୁରୁସତ ମିଳିଲେ ସେ 'ସରସ୍ୱତୀ' ଓ 'ଡନ' ନାମକ ଦୁଇଟି ମାସିକ ପତ୍ରିକା ନିୟମିତ ପଢୁଥିଲେ । କିଛି ହିନ୍ଦୀ ଓ ସଂସ୍କୃତ ବହି ମଧ ସେ କିଣିଥିଲେ । ତେବେ ମଠରେ ସେମିତି କିଛି ପଢ଼ାପଢ଼ିର ଭଲ ବ୍ୟବସ୍ଥା ନଥିଲା । ସେଥିପାଇଁ ରାହୁଳ କିଛି ମାସ ପାଇଁ ନିଜ ଗାଁ କନାଇଲାକୁ ଫେରି ଆସନ୍ତି । ଭାଷା ବିଜ୍ଞାନ ଓ ସାଂସ୍କୃତିକ ନୃତତ୍ୱ ପ୍ରତି ତାଙ୍କର ଖୁବ ଆକର୍ଷଣ ଥିଲା । ଭୋଜପୁରୀ ଓ କାଶୀର ମଲ୍ଲୀ ଭାଷାର (ବାରାଣାସୀର ହିନ୍ଦୀ ଭାଷା) ସ୍ୱତନ୍ତ୍ର ଉଚ୍ଚାରଣ ପଦ୍ଧତି ସେ ଅନୁଧାନ କରିଥିଲେ । ଏପରିକି ବିଭିନ୍ନ ଜାତିର ସ୍ତ୍ରୀ ଲୋକମାନଙ୍କର ବିଭିନ୍ନ ପ୍ରକାର ବ୍ରତ ଓ ଆଚାର ବିଚାର ସମ୍ପର୍କରେ ମଧ ସେ ଲେଖିଛନ୍ତି ।

୧୯୧୩ ସାଲ ଜୁଲାଇ ମାସରେ ମାନସିକ ଅସନ୍ତୋଷରୁ ମୁକ୍ତି ପାଇବା ପାଇଁ ପରସା ମଠ ତ୍ୟାଗ କରି ସେ ହାଜିପୁର ଚାଲି ଯାଆନ୍ତି । ବିନା ଟିକେଟରେ ରାହୁଳ ଆସାନସୋଲ, ଆଦ୍ରା ଓ ଖଡ଼ଗପୁର ଦେଇ ପୁରୀ ଯାଆନ୍ତି । ସେଠି ତୀର୍ଥ ଦର୍ଶନ ପରେ ସେ ମାନ୍ଦ୍ରାଜ ଯାଆନ୍ତି । ସାଧୁ ବେଶରେ ଯାଇ ପହଞ୍ଚନ୍ତି "ସତ୍ରମ" ଧର୍ମଶାଳାରେ । ସେଠାରୁ ପାଦରେ ତିରୁମାଳୀ ଯାଇ ଉତ୍ତରାର୍ଥୀ ମଠରେ ଆଶ୍ରୟ ନିଅନ୍ତି । ସେଠି ସେ ଆରମ୍ଭ କରନ୍ତି ତାମିଲ୍ ଶିକ୍ଷା । ପୁନ୍ନମଲାଇ, ପାତପେରୁମଲ, ତିରୁମିଶି ଏବଂ ତିନ୍ନନୁର ଇତ୍ୟାଦି ସମସ୍ତ ଦକ୍ଷିଣର ତୀର୍ଥସ୍ଥାନ ସେ ଭ୍ରମଣ କରନ୍ତି । ସେ ମଧ ଦର୍ଶନ କରନ୍ତି ତିରୁପତି, ତିରୁକାଳୀପୁନ୍ଦ୍ରମ, କାଞ୍ଚିପୁରମ୍ ଓ ରାମେଶ୍ୱରମ୍ ।

ରାହୁଳ ତାଙ୍କ ଜୀବନୀରେ ତାଙ୍କ ଭ୍ରମଣ ବିଷୟରେ ରାମନନ୍ଦ, ବାଙ୍ଗାଲୋର, ବିଜୟନଗରମ୍, ପାନ୍ଦାହାରପୁର, ପୁନା, ବମ୍ବେ, ନାସିକ, ତ୍ରିୟାମ୍ବାକ, କପିଳଧାରା, ଓଁକାରମାନ୍ଧାତା, ଏବଂ ଉଜ୍ଜୟିନୀ ଇତ୍ୟାଦି ଭ୍ରମଣ କରିଥିବା କଥା ଲେଖିଛନ୍ତି । ଉଜ୍ଜୟିନୀରେ

ସେ ଯେତେବେଳେ କୁମ୍ଭ ମେଳାରେ ସାଧୁ ଓ ସନ୍ୟାସୀମାନଙ୍କ ଭିତରେ ଝଗଡ଼ା ଦେଖନ୍ତି ସେତେବେଳେ ସେ ଖୁବ୍ ଅସନ୍ତୋଷ ପ୍ରକାଶ କରନ୍ତି ।

ତା ପରେ ସେ ଦାକର ଓ ଅହମ୍ମଦାବାଦ ମଧ୍ୟ ଯାଆନ୍ତି । ୧୯୧୪ରେ ପୁଣି ପରସା ମଠକୁ ଫେରି ଆସନ୍ତି । କିନ୍ତୁ ମଠର ପ୍ରଶାସନ ଓ ସମସ୍ତ ସମ୍ପତ୍ତିର ଦାୟିତ୍ୱ ନେବାକୁ ସେ କୁଣ୍ଠାବୋଧ କରନ୍ତି । ଠିକ୍ ସେଇ ସମୟରେ ଭାରତ ସରକାରଙ୍କର ପ୍ରତ୍ନତତ୍ତ୍ୱ ବିଭାଗର ଦୁଇଜଣ ଫଟୋଗ୍ରାଫର ଏସ୍. ଗାଙ୍ଗୁଲୀ ଓ ପିଣ୍ଡି ଦାସ ଆସି ସେଇ ମଠରେ ପହଞ୍ଚନ୍ତି । ରାହୁଲଙ୍କର ଫଟୋଗ୍ରାଫି ପ୍ରତି ଖୁବ୍ ଆକର୍ଷଣ ଥିଲା । ପରେ ଫଟୋଗ୍ରାଫି ତାଙ୍କର ଗୋଟାଏ ନିଶା ହେଇଯାଇଥିଲା । ମଠରେ ଯୋଉ କାରବାର ସେ ଦେଖିଲେ ସେଥିରେ ଅଣନିଶ୍ୱାସୀ ହୋଇ ଯାଉଥିଲେ । ତେଣୁ ଗୋପନରେ ସେ ଅଯୋଧ୍ୟା ଚାଲି ଆସିଲେ । ସେଠାରେ ସେ ଆର୍ଯ୍ୟସମାଜ ପ୍ରଚାରକମାନଙ୍କ ସଂସ୍ପର୍ଶରେ ଆସନ୍ତି । ସେଠି ସେ ବିତର୍କ ଓ ଆଲୋଚନା ସଭାର ଆୟୋଜନ କରନ୍ତି । ଯେଉଁ ସବୁ ବ୍ରହ୍ମଚାରୀ ଅଯୋଧ୍ୟା ଓ ଫୈଜାବାଦ ମଝିରେ ଥିବା କାଳୀ ମନ୍ଦିରରେ ଛେଳି ବଳି ଦେଉଥିଲେ ରାହୁଲ ସେମାନଙ୍କ ବିରୁଦ୍ଧରେ ଗୋଟିଏ ସଭାର ଆୟୋଜନ କଲେ । ସେ ଏହି ପ୍ରତିବାଦ ସଭାର ଆୟୋଜନ କରିଥିଲେ ବୋଲି ତାଙ୍କୁ ମନ୍ଦିରର ପୁରୋହିତମାନଙ୍କ ଦ୍ୱାରା ଅପମାନ ସହ୍ୟ କରିବାକୁ ପଡ଼ିଥିଲା । ଏ କଥାଟା ପୁଲିସ କାନକୁ ମଧ୍ୟ ଗଲା । ଠିକ୍ ସେଇ ସମୟରେ ରାହୁଲ ଆର୍ଯ୍ୟସମାଜ ଓ ମୂର୍ତ୍ତିପୂଜା ବିରୋଧି ଏବଂ ନାସ୍ତିକ ହିସାବରେ ଜନରବ ହୁଏ ।

୧୯୧୮ ସାଲ ଠାରୁ ୧୯୨୨ ପର୍ଯ୍ୟନ୍ତ ସମୟଟିକୁ ରାହୁଲ ତାଙ୍କ ଜୀବନର "ନୂତନ ପ୍ରକାଶ" ବା "ନୂତନ ଆଲୋକ"ର ଦିନ ବୋଲି କହିଛନ୍ତି । ଜେଜେଙ୍କ ମୃତ୍ୟୁ ପରେ ତାଙ୍କ ବାପା ଆଶା କରୁଥିଲେ ଯେ ରାହୁଲ ହୁଏତ ଦିନେ ଗାର୍ହସ୍ଥ୍ୟ ଜୀବନକୁ ଫେରି ଆସିବେ । କିନ୍ତୁ ରାହୁଲ ଥିଲେ ବିଦ୍ରୋହୀ । ସେ ମୁସଲମାନ ଓ ରାଜପୁତମାନଙ୍କ ଘରକୁ ଯାଇ ମାଛ ମାଂସ ଖାଉଥିଲେ । ଆର୍ଯ୍ୟ ସମାଜ ଉପରେ ସେ ଅନେକ ବହି ପଢ଼ିଥିଲେ । ୧୯୧୫ରେ ସେ ପୁଣି ଆଗ୍ରା ଯାଆନ୍ତି ଏବଂ ସେଠାରେ ଥିବା 'ଆର୍ଯ୍ୟ ମୁସାଫିର' ବିଦ୍ୟାଳୟରେ ଭର୍ତ୍ତି ହୁଅନ୍ତି । ସେଠାରେ ସେ ଦୁଇ ବର୍ଷ ପର୍ଯ୍ୟନ୍ତ ସଂସ୍କୃତ, ଆରବୀ, ଧର୍ମଶାସ୍ତ୍ର ଏବଂ ଜାତୀୟ ଇତିହାସ ଇତ୍ୟାଦି ପଢ଼ନ୍ତି । ସେଠାରେ ଗୋଟାଏ ଶୃଙ୍ଖଳାବଦ୍ଧ ଜୀବନ ପ୍ରତି ତାଙ୍କର ଆଗ୍ରହ ଓ ସମ୍ମାନ ସୃଷ୍ଟି ହୁଏ ଏବଂ ଗୋଟାଏ ପ୍ରକାର ଅସ୍ପଷ୍ଟ ରାଷ୍ଟ୍ରୀୟ

ଚେତନା ତାଙ୍କ ଭିତରେ ସଂଞ୍ଚାରିତ ହେବାକୁ ଆରମ୍ଭ କରେ । ଏସବୁ ଅବଶ୍ୟ ସେ ସଂବାଦପତ୍ରରୁ ପାଆନ୍ତି । ୧୯୧୫ରେ ସେ ମୁସାଫିର ପତ୍ରିକାରେ କେଦାର ନାଥ ବିଦ୍ୟାର୍ଥି ନାମରେ ଉର୍ଦ୍ଦୁରେ ଲେଖିବା ଆରମ୍ଭ କରନ୍ତି । ପୁଣି ମିରଟ୍‌ରୁ ପ୍ରକାଶ ପାଉଥିବା ହିନ୍ଦୀ ପତ୍ରିକା "ଭାସ୍କର"ରେ ରାହୁଲ ତାଙ୍କର ପ୍ରଥମ ଦୀର୍ଘ ପ୍ରବଂଧ ପ୍ରକାଶ କରନ୍ତି । ଏଇ ପ୍ରବଂଧରେ ସେ ଭଣ୍ଡ ସନ୍ୟାସୀ ଯୋଉମାନେ ଲୋକଙ୍କୁ ଠକାନ୍ତି ସେମାନଙ୍କ ଉପରେ ଆକ୍ରମଣ କରନ୍ତି ।

ତା ପରଠାରୁ ତାଙ୍କର ଆରମ୍ଭ ହୁଏ ବିଶେଷ ଚିନ୍ତନ । ସେ ପ୍ରଥମେ ପଢ଼ିବାକୁ ଆରମ୍ଭ କଲେ ଆର୍ଯ୍ୟସମାଜର ସନାତନ ହିନ୍ଦୁ ଧର୍ମ ବିରୁଦ୍ଧରେ ରଚିତ ପୁସ୍ତକ ସମୂହ, ଖ୍ରୀଷ୍ଟିଆନ ମିଶନାରୀମାନଙ୍କ ପୁସ୍ତକ ବିଶେଷ କରି ଯୋଉଥିରେ ଅଛି ଇସଲାମର ସମାଲୋଚନା । ଖଣ୍ଡନ - ମଣ୍ଡନାତ୍ମକ ତର୍କଶାସ୍ତ୍ର, ମୌଲବୀ ମନାଉଲ୍ଲାହଙ୍କର 'ଅହଲେ ଉଦୀସ' ଏବଂ ଅନ୍ୟାନ୍ୟ ପତ୍ରପତ୍ରିକା। ବୈଷ୍ଣବ ଧର୍ମରୁ ନରମ ବୈରାଗୀ ପରି, ସାଧୁ ସମାଜରୁ ଆର୍ଯ୍ୟ ସମାଜ ଯୋଉଠି ଜାତି ପ୍ରଥାର ଆଲୋଚନା ଥିଲା ବେଶୀ । ଏଇ ସବୁ ପଢ଼ିବା ପରେ ତାଙ୍କ ମନ ବୁଦ୍ଧିବାଦୀ ଓ ପ୍ରଗତିଶୀଳ ହେଇ ଉଠିଲା । ୧୯୧୮ ମସିହାରେ ଜବ୍‌ବଲପୁରରେ ମୌଲବୀ ଓ ଆର୍ଯ୍ୟ ପଣ୍ଡିତମାନଙ୍କର ଶାସ୍ତ୍ର ଉପରେ ଏକ ଆଲୋଚନା ସଭା ଅନୁଷ୍ଠିତ ହୁଏ । ଦୁଇ ଦିନର ଏହି ସଭାରେ ବହୁ ବିଷୟ ଆଲୋଚନା ହୁଏ । ତା ପରେ ରାହୁଲ "କୋରାନ୍"କୁ ଦେବନାଗରୀ ଲିପିରେ ଲେଖି ତାକୁ ହିନ୍ଦୀରେ ଅନୁବାଦ କରିବାର ଦାୟିତ୍ୱ ନିଅନ୍ତି । ଏଥିପାଇଁ ସେ ଅବଶ୍ୟ ପାରିଶ୍ରମିକ ପାଇଥିଲେ ଅନେକ କମ୍ । ଏଥିପାଇଁ ଶେଷରେ ସେ କାମ ସେ ଛାଡ଼ି ଦେଲେ । ରାହୁଲ ଯେତେବେଳେ ଆଗ୍ରାରେ ପାଠ ପଢୁଥିଲେ ସେତେବେଳେ କୋମାଗାଟାମାରୁରେ ଯୋଉ ଘଟଣା ଘଟେ ସେଥିରେ ବହୁ ଶିଖ୍ ଇଂରେଜ ସାମ୍ରାଜ୍ୟବାଦୀଙ୍କ ବିରୁଦ୍ଧରେ ଲଢ଼େଇ କରି ମୃତ୍ୟୁ ବରଣ କରିଥିଲେ । ଯୁବକ ରାହୁଲଙ୍କ ମନରେ ଏ ସବୁ ଭୀଷଣ ପ୍ରତିକ୍ରିୟା ସୃଷ୍ଟି କରିଥିଲା ।

୧୯୧୯ରେ ରାହୁଲ ପୁଣି କେବଳ ସଂସ୍କୃତ ଅଧ୍ୟୟନ ପାଇଁ ମନ ବଳାନ୍ତି ଏବଂ ସେଥିପାଇଁ ଲାହୋର ଯାଆନ୍ତି । ପଞ୍ଜାବୀ ଭାଷା ଓ ପଞ୍ଜାବୀ ନାରୀ ପ୍ରତି ତାଙ୍କର ସେଠି ଆକର୍ଷଣ ବୃଦ୍ଧି ପାଏ । 'କୋଟାର' ଗୋଟିଏ ସୁନ୍ଦରୀ ରମଣୀକୁ ଦେଖି ତାଙ୍କର 'ଗାଥା ସପ୍ତଶତୀ' ର କଥା ମନେ ପଡ଼େ । ତା ପରେ ଦିଲ୍ଲୀ ଓ ହରିଆଣା ହେଇ ସେ ଲାହୋରରେ ପହଞ୍ଚନ୍ତି । ଏଇ ସମୟରେ ଆର୍ଯ୍ୟ ସମାଜୀମାନଙ୍କର ଆନ୍ଦୋଳନ ଖୁବ୍ ଜୋର୍ ସୋର୍

ଚାଲୁଥାଏ । ରାହୁଳ ସ୍ୱାଧୀନ ଭାବେ ଚିନ୍ତା କରିବାକୁ ଭଲ ପାଉଥିଲେ । ତେଣୁ ସେ ମଠବାସୀ ସାଧୁମାନଙ୍କ ସହିତ ଆଉ ରହିବାକୁ ଚାହିଁଲେ ନାହିଁ । କାରଣ ସେତେବେଳେ ତାଙ୍କୁ ଆର୍ଯ୍ୟ ସମାଜର ମତ ଓ ବିଚାର ପଦ୍ଧତି ଖୁବ୍ ବେଶୀ ଆକୃଷ୍ଟ କରିଥିଲା । ଆର୍ଯ୍ୟ ସମାଜର ଇଟାଓ୍ୱା, କାନପୁର, ଲକ୍ଷ୍ନୌସ୍ଥିତ ଅଫିସକୁ ସେ ଯାଇଥିଲେ । କିନ୍ତୁ ସେଠାରେ ଏଇ 'ଆର୍ଯ୍ୟ ମୁସାଫିର'କୁ  କେହି ସ୍ୱୀକୃତି ଦେଇ ନ ଥିଲେ । ରାଏବରେଲୀରେ ହିନ୍ଦୀ ଭାଷା ଓ ସାହିତ୍ୟ ସମ୍ପର୍କରେ ସେ ଭାଷଣ ଦେଇଥିଲେ । ବାରଣାସୀରେ ମଧ୍ୟ ଭାଷଣ ଦେଲେ । ଅହରୋରାରେ ରାହୁଳଙ୍କ ବାପା ଆସି ପହଞ୍ଚନ୍ତି ଏବଂ ତାଙ୍କୁ ଗାଁକୁ ଫେରିଯିବାକୁ କହନ୍ତି । କିନ୍ତୁ ରାହୁଳ ତାଙ୍କ ଜୀବନରେ ଥରେ ଯାହା ତ୍ୟାଗ କରନ୍ତି ତାକୁ ଆଉ ଥରେ ଗ୍ରହଣ କରନ୍ତି ନାହିଁ । ସେ ସମୟରେ ଚିଠି ପତ୍ର ଆଦାନପ୍ରଦାନର ଭାଷା ଥିଲା ସଂସ୍କୃତ । ୧ ୯ ୨ ୨ ସାଲ ୧ ୩ ଫେବୃଆରୀ ଠାରୁ ଅଗଷ୍ଟ ୯ ପର୍ଯ୍ୟନ୍ତ ସେ ବକସାର ଜେଲରେ ବସି ସେ ସଂସ୍କୃତରେ ତାଙ୍କର ଡ଼ାଏରୀ ଲେଖିଲେ । ବେଳେବେଳେ ସେ ହିନ୍ଦୀ ଉର୍ଦ୍ଦୁ ଆରବୀ ଓ ସଂସ୍କୃତରେ ମଧ୍ୟ କବିତା ଲେଖିଛନ୍ତି । ତା ପରେ ପୁଣି ଅହରୋରାରୁ ପଳେଇ ଯିବାକୁ ଚେଷ୍ଟା କରନ୍ତି । ବ୍ୟର୍ଥ ମନୋରଥ ହେଇ ତାଙ୍କ ପିତା ତାଙ୍କ ସହିତ ବାରଣାସୀ ପର୍ଯ୍ୟନ୍ତ ଆସନ୍ତି ଏବଂ ତାଙ୍କର ମାନସିକ ପରିବର୍ତ୍ତନ ପାଇଁ ଖୁବ୍ ଚେଷ୍ଟା କରନ୍ତି । ସେ ଚେଷ୍ଟା ମଧ୍ୟ ବ୍ୟର୍ଥ ହୁଏ । ଏହାହିଁ ଥିଲା ରାହୁଳଙ୍କ ସହିତ ତାଙ୍କ ପିତାଙ୍କର ଶେଷ ସାକ୍ଷାତ ।

ଅନେକ ଦିନ ପର୍ଯନ୍ତ ରାହୁଳଙ୍କ ବାସସ୍ଥାନର କୌଣସି ଠିକ୍ ଠିକଣା ନ ଥିଲା । ସେ ମନେ ମନେ ଠିକ୍ କରିଥିଲେ ଯେ ପଚାଶ ବର୍ଷ ବୟସ ପୂର୍ଣ୍ଣ ନ ହେବା ଯାଏ ସେ ଆଉ ଜନ୍ମସ୍ଥାନ ଆଜମଗଡ଼ରେ ପାଦ ପକେଇବେ ନାହିଁ । ଏଇ ସିଦ୍ଧାନ୍ତରେ ସେ ଅଟଳ ଥିଲେ ।

୧ ୯ ୧ ୮ରେ ରାହୁଳ ଉର୍ଦ୍ଦୁ, ହିନ୍ଦୀ ଓ ଇଂରାଜୀ ସଂବାଦ ପତ୍ରରେ ଋଷ ବିପ୍ଳବ କଥା ପଢ଼ନ୍ତି । ସେତେବେଳେ ତାଙ୍କ ଆଖିରେ ଭାସି ଉଠେ ଏକ ସାମ୍ୟବାଦୀ ସମାଜର ସ୍ୱପ୍ନ ବା ଗୋଟାଏ ଆଦର୍ଶ ସାମ୍ୟବାଦୀ ସମାଜ । ଏପରିକି ୧ ୯ ୨ ୨ରେ ସେ ଏ ବିଷୟରେ ସଂସ୍କୃତରେ ଗୋଟିଏ ପ୍ରବଂଧ ଲେଖିଲେ । ୧ ୯ ୨ ୩- ୨ ୪ରେ ସେ ହଜାରିବାଗ ଜେଲରେ ବସି ତାଙ୍କର ରାଜନୈତିକ ଆଦର୍ଶକୁ ବାସ୍ତବରୂପ ଦେବା ପାଇଁ 'ବାଇଶ ବିଂସଦୀ' ବା 'ଦ୍ୱାଦଶ ଶତାବ୍ଦୀ' ନାମରେ ଖଣ୍ଡେ ବହି ଲେଖିଲେ ।

୧ ୯ ୧ ୯ ଏପ୍ରିଲ - ମେ ମାସରେ ଲାହୋରରେ ଥିଲା ବେଳେ ରାହୁଳ ପ୍ରଥମ କରି ଇଂରେଜ ଶାସନର ଶୀକାର ହେଇ ରାଜନୈତିକ ସଂଘର୍ଷ ପାଇଁ ପ୍ରସ୍ତୁତ ହେଲେ । ଏହି

ଚାଲେଂଜ ତାଙ୍କୁ ନୂଆ ରାସ୍ତା ଦେଖାଏ । କିନ୍ତୁ ସେ ରାସ୍ତାର ସାଫଲ୍ୟ ପାଇଁ ତାଙ୍କ ଠାରେ ଥିବା ମଠ ବା ଆର୍ଯ୍ୟସମାଜର ଜ୍ଞାନ ଯଥେଷ୍ଟ ନ ଥିଲା । 'ଓ' ଡ୍ୱାୟାର'ଙ୍କ ମନମୁଖୀ ଶାସନର ଅନ୍ଧକାର ଦିନଗୁଡ଼ିକ ବ୍ରିଟିଶ ବିରୋଧି ଜନମତକୁ ଗଢ଼ି ତୋଳିବାକୁ ସାହାଯ୍ୟ କରୁଥାଏ । ରାହୁଳ ସେତେବେଳେ ଲେଖିଥିଲେ 'ବହୁ ଭାରତୀୟଙ୍କ ମୁଖା ଖୋଲି ଯାଉଛି' ।

ରାହୁଳ ଅବଶ୍ୟ ସଂସ୍କୃତ ଶାସ୍ତ୍ରୀ ପରୀକ୍ଷାରେ ପାଶ୍ କରି ପାରି ନଥିଲେ । ସେଥିପାଇଁ ଅବଶ୍ୟ ତାଙ୍କର ଉଗ୍ର ଜିଦ୍‌ଖୋର ମନୋବୃତ୍ତି ଦାୟୀ । ତା ପରେ ସେ ଚିତ୍ରକୂଟ ଗଲେ ଏବଂ ସେଠାରେ କାଶୀ ନ୍ୟାୟ ମଧମ ପରୀକ୍ଷା ଦିଅନ୍ତି । ଏ ପରୀକ୍ଷାରେ ମଧ ସେ ପାଶ୍ କରି ପାରି ନଥିଲେ । କିନ୍ତୁ କଲିକତାରେ ମିମଂାସା ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲେ । ପରୀକ୍ଷା ଦେଇଥିଲେ ସେ ଜବ୍‌ବଲପୁରରେ ।

ରାହୁଳଙ୍କ ଭ୍ରମଣ ବିଳାସ ପୁଣି ଥରେ ମୁଣ୍ଡ ଟେକି ଉଠିଲା । ୧୯୨୦ରେ ୨୭ବର୍ଷ ବୟସରେ କରବୀରୁ ବିନା ଟିକେଟରେ ରେଳଯାତ୍ରା କରି ବାରାଣସୀରେ ଆସି ପହଞ୍ଚିଲେ ଏବଂ ସେଠି ଅସୁସ୍ଥ ହେଇ ପଡ଼ନ୍ତି । ପ୍ରଥମେ ସେ ଅବଶ୍ୟ ସାରନାଥରେ ପହଞ୍ଚିଲେ । ଗୋରଖପୁରରୁ କାସିଆ ଯାଇ ସେଠି ବୁଦ୍ଧଙ୍କ 'ପରିନିର୍ମାଣ' ସ୍ଥାନ ଦର୍ଶନ କରନ୍ତି । ଏଇ ତୀର୍ଥଯାତ୍ରାର ବର୍ଣ୍ଣନା ସେ ତାଙ୍କର ଆତ୍ମକଥାରେ ବଡ଼ କାବ୍ୟିକ ଭାଷାରେ ବର୍ଣ୍ଣନା କରିଛନ୍ତି । ସେ ଗୋରଖପୁରରୁ ନେପାଳ ଯାଆନ୍ତି । ଲୁମ୍ବିନୀ ଦର୍ଶନ କରନ୍ତି ଏବଂ ତା ସହିତ କପିଳାବାସ୍ତୁ ମଧ । 'ନିଗଲିହାରା'ରେ ଗୋଟିଏ ପୋଖରୀ ପାଖରେ ଭଗ୍ନ ଅବସ୍ଥାରେ ପଡ଼ିଥିବା ଅଶୋକଙ୍କ ସମୟର ଶିଳାଲିପି ତାଙ୍କୁ ଆକର୍ଷଣ କରେ ।

ଭୋଟ (ଭୋଜ) ଦେଶକୁ ଯିବାକୁ ତାଙ୍କର ଇଚ୍ଛା ହେଲା । କିନ୍ତୁ ଜଣେ ନେପାଳୀ ମହନ୍ତ ରାହୁଳଙ୍କୁ ଗୋଟିଏ ମଠର ଉତ୍ତରାଧିକାରୀ ହେବା ପାଇଁ ଅନୁରୋଧ କରିବାରୁ ସେ ମନା କଲେ । ରାହୁଳ ପରିହାସ ଛଳରେ ସେଇ ମହନ୍ତଙ୍କ ସହିତ ଗଂଜା ସେବନ କରୁଥିବା ସହଯୋଗିନୀ 'ମାତା'ଙ୍କ ସହିତ ଥିବା ଆତ୍ମୀୟତା କଥା ତାଙ୍କ ଆତ୍ମକଥାରେ ଉଲ୍ଲେଖ କରିଛନ୍ତି ।

ରାହୁଳଙ୍କ ଜୀବନରେ ଭ୍ରମଣର ସବୁଠାରୁ ବିପଦ ଜନକ ଓ ଚିତ୍ତାକର୍ଷକ କଥାଟି ହେଲା ତାଙ୍କର ଚାରିଥର ତିବ୍‌ବତ ଯାତ୍ରା । ଏ କଥା କହିବା ପୂର୍ବରୁ ତାଙ୍କର ରାଜନୈତିକ ବିଚାର ବିବେଚନାର ସଂକ୍ଷିପ୍ତ ଆଭାସ ଦେବା ଉଚିତ । ସେ ରାଜନୀତିରେ (୧୯୨୧ ରୁ ୧୯୨୭) ନିଜକୁ ସାମିଲ କରନ୍ତି । ଏଇ ସମ୍ପର୍କରେ ସେ ଖଣ୍ଡୁଆରେ ଯୋଉ ଅସହଯୋଗ

ଆନ୍ଦୋଳନ ହେଇଥିଲା ସେଥିରେ ଯୋଉ ଭାଷଣ ଦେଇଥିଲେ ସେ କଥା ଉଲ୍ଲେଖ କରିଛନ୍ତି । ସନ୍ୟାସୀର ଗେରୁଆ ବସ୍ତ୍ର ପିନ୍ଧି ସେ ସେଲିମପୁର ଜିଲ୍ଲା କଂଗ୍ରେସ କମିଟିକୁ ଯାଇ ସେଠି 'ପରସା'ରୁ କାମ ଆରମ୍ଭ କରିବା କଥା ଘୋଷଣା କରିଥିଲେ ।

ପରିହାସ ଛଳରେ ସେ ଲେଖିଛନ୍ତି ଯେତେବେଳେ ତାଙ୍କ ଅଂଧ ବିଶ୍ୱସୀ ଚେଲା ତଥା କଥିତ ଗୁରୁଙ୍କ ଆଗରେ ଛେଳି ବଳି କିମ୍ବା ଗଂଜା ମଦର ଉତ୍ସର୍ଗ କଥା ମୋଟେ ଛାଡ଼ି ପାରେନା ରାହୁଳ ସେତେବେଳେ ବାଧ ହେଇ ଦିନେ ତା ସାମନାରେ ଅଭିନୟ କଲେ - ତାଙ୍କ ଭିତରେ ଗାନ୍ଧୀ ନାମକ ଜଣେ ଦେବତାର ଉଦ୍‌ଭବ ହେଲା ଏବଂ ସେଇ ଦେବତା ଘୋଷଣା କଲା ଯେ ସବୁ ଦେବତା ଏବେ 'ଗାନ୍ଧୀ ବାବା'ଙ୍କ ସହିତ ଅଛନ୍ତି । ସେମାନେ କହନ୍ତି ଯିଏ ଦେବାତର ପୂଜାରେ ଗଂଜା ଓ ମଦ ବ୍ୟବହାର କରିବ ସେ ଧ୍ୱଂସ ହେବ । ମୁଁ ତାକୁ ଏଇ ଅଭିଶାପ ଦେଉଚି ।

ଏହାର ପରିଣାମ ଥିଲା ଅତ୍ୟନ୍ତ ଶୁଭ ।

ରାହୁଳ ସାଧୁ ବେଶରେ ଛାପରା ଜିଲ୍ଲାର ରୋଗୀ, ଦୀନ ଦୁଃଖି ଓ ଗରିବ ଲୋକଙ୍କର ସେବାରେ ବ୍ୟସ୍ତଥିଲେ । ସେତେବେଳେ ସମାଜ ସେବା ଓ ସ୍ୱାଧୀନତା ଆନ୍ଦୋଳନ ପାଇଁ କାମ ଅଲଗା ନ ଥିଲା । ଏକଦା ଗାନ୍ଧୀ ସ୍କୁଲରୁ ସେ ସମସ୍ତଙ୍କୁ ଚରଖା ବିତରଣ ମଧ କରୁଥିଲେ । ବିଦେଶୀମାନଙ୍କ ବିରୁଦ୍ଧରେ ସେ ଭୋଜପୁରୀ ଭାଷଣ ଦେଉଥିଲେ । ୧୯୨୨ ଜାନୁଆରୀ ୩୧ ତାରିଖରେ ତାଙ୍କୁ ଆରେଷ୍ଟ କରାହୁଏ । ଜେଲ ଭିତରେ ସେ ଗୁପ୍ତ ଭାବରେ ଟ୍ରଟସ୍କିଙ୍କ ଦ୍ୱାରା ଲିଖିତ 'ବଲସେଭିଜମ ଏଣ୍ଡ୍ ୱାର୍ଲଡ଼ ରିଭଲ୍ୟୁସନ' ବହି ପାଆନ୍ତି । ସେତେବେଳେ ରାହୁଳ ସଂସ୍କୃତରେ ଗୋଟାଏ ରାଜନୈତିକ ଭଜନ ଲେଖି ଜେଲରେ ଥିବା ବଂଧୁମାନଙ୍କୁ ଶୁଣାନ୍ତି । "ଶୁଣ ଶୁଣ ହେ ପଥିକ, ମୁଁ ନୁହେଁ ଏକଲା ।" ତା ପରେ ସେ ତାଙ୍କର ଦୋଷ ସ୍ୱୀକାର କରିଥିବାରୁ ତାଙ୍କୁ ୬ ମାସ ଜେଲ୍ ଦଣ୍ଡ ହୁଏ । ସେଥିରେ ରାହୁଳ କହିଲେ ଧନ୍ୟବାଦ । ତାଙ୍କ ହାତରେ ପିନ୍ଧାଇ ଦିଆଗଲା ଲୁହାର ବେଡ଼ି । ସେଇ ପ୍ରସଙ୍ଗରେ ସେ ଲେଖିଥିଲେ ଯେତେବେଳେ ମୋ ହାତରେ ମୋ ଜେଜେବାପା ଦୁଇଟା ରୁପାର ବଳା ପିନ୍ଧାଇ ଦେଇଥିଲେ ସେତେବେଳେ ତାକୁ ମୁଁ ଲୁହାର ବେଡ଼ି ବୋଲି ମନେ କରିଥିଲି । କେବଳ ପାର୍ଥକ୍ୟ ଏଇ ଯେ ଯେତେବେଳେ ଲୁହାର ବେଡ଼ି ହାତରେ ଥାଏ ସେତେବେଳେ କାମ କରିବାର ଉପାୟ ନ ଥାଏ । ବକ୍‌ସାର ଜେଲରେ ସେ ଥିଲେ ୬ ମାସ ।

ଜେଲରେ ଥିଲା ବେଳେ ସେ 'ଫାଇଲ' ଓ 'କଳା' ଶବ୍ଦ ବିଷୟରେ ପଦ୍ୟ ରଚନା କରନ୍ତି । ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କର ନାଟକ 'ଅନ୍ଧେର ନଗରୀ' (ବା ଅନ୍ଧର ନଗର) ସେ ଜେଲ୍ ଭିତରେ ଅଭିନୟ କରାଇଥିଲେ । ସେଇ ଜେଲ୍‌ରେ ଥିବା ବେଳେ ସେ 'କୋରାନ'କୁ ସଂସ୍କୃତ ଭାଷାରେ ଅନୁବାଦ ଆରମ୍ଭ କରିଥିଲେ । ଜେଲର ବଂଧୁମାନଙ୍କୁ ସେ ବେଦ ଓ ଉପନିଷଦ ପଢ଼ି ଶୁଣାନ୍ତି । ଜେଲ୍ ଭିତରର ଖବର ସେ ଗୋପନରେ ଜେଲ୍ ବାହାରକୁ ପଠାନ୍ତି ଯାହା ମହଗୁଲ ହକଙ୍କର 'ମଦର ଲେଣ୍ଡ' ପତ୍ରିକାରେ ଛପା ହୋଇଥିଲା ।

୧୯୨୨ ଅକ୍ଟୋବର ୨୯ ତାରିଖରେ ରାହୁଳ ଜିଲ୍ଲା କଂଗ୍ରେସର ସଂପାଦକ ନିର୍ବାଚିତ ହୁଅନ୍ତି । କଂଗ୍ରେସର ଗୟା ଅଧିବେଶନରେ ରାଜାଜୀଙ୍କୁ ଡେ଼ପୁଟି ମହାତ୍ମା ବୋଲି କୁହାଯାଇଥିଲା । କାରଣ ତାଙ୍କ ଦଳଟି ଥିଲା ଅତିମାତ୍ରାରେ ପରିବର୍ତ୍ତନ ବିରୋଧି । ଅନ୍ୟଦଳର ନେତା ଥିଲେ ସ୍ୱରାଜ୍ୟ ପାର୍ଟିର ମୋତିଲାଲ ନେହେରୁ, ବଲ୍ଲଭ ଭାଇ ପଟେଲ ଏବଂ ଦେଶବଂଧୁ ଚିତ୍ତ ରଂଜନ ଦାସ । ରାହୁଳ ଧିରେ ଧିରେ ସାମ୍ୟବାଦୀ ବିପ୍ଳବର ଭାବଧାରା ପ୍ରତି ଆକୃଷ୍ଟ ହେଇ ପଡ଼ନ୍ତି । ବସ୍ତୁତ ସେ ଧର୍ମନିରପେକ୍ଷ ଏପରିକି ନାସ୍ତିକ ମଧ ହେଇ ପଡ଼ିଲେ ।

ସେ ୧୯୨୩ ମାର୍ଚ୍ଚ-ଏପ୍ରିଲ ମାସରେ ମାତ୍ର ଦେଢ଼ମାସ ନେପାଳରେ ଥିଲେ । ସେତେବେଳେ ହିନ୍ଦୁମାନଙ୍କୁ ନେପାଳର ପଶୁପତି ନାଥ ମନ୍ଦିରକୁ କେବଳ ଶିବରାତ୍ରୀ ଦିନ ଯିବାକୁ ଦିଆଯାଉଥିଲା । ସେଇ ସମୟରେ ସେ ସେଠାରେ ବୌଦ୍ଧ ଦାର୍ଶନିକ ଏବଂ ମଙ୍ଗୋଲ ଓ ଚୀନା ଲାମାମାନଙ୍କ ସଂସ୍ପର୍ଶରେ ଆସନ୍ତି ।

ନେପାଳରୁ ଫେରିବା ମାତ୍ରେ ସରକାର ତାଙ୍କୁ ପୁଣି ଥରେ ଗିରଫ କଲେ ଏବଂ ବାଙ୍କିପୁର ଜେଲରେ ଗୋଟାଏ ନିର୍ଜନ କୋଠରୀରେ ବନ୍ଦୀ କରି ରଖିଦେଲେ । ସେଠାରୁ ତାଙ୍କୁ ପୁଣି ହଜାରୀବାଗ ଜେଲକୁ ପଠାଇ ଦିଆଯାଏ । ସେଠାରେ ଦୁଇ ବର୍ଷ ତାଙ୍କୁ ଅଟକବନ୍ଦୀ ଭାବରେ ରଖାଯାଏ । ସେତେବେଳେ ତାଙ୍କ ପାଖରେ ଥିଲା ପାଲିଭାଷା ଓ ସିଂହଳୀ ଲିପିରେ ଲେଖା 'ମଝଝିମ ନିକାୟ' । ଏଇଟାକୁ ସେ ସେ଼ଠାରେ ଦୈନିକ ପଢୁଥିଲେ । ସେଇ ପୁସ୍ତକଟିକୁ ସେ ପୁଲିସ ପାଖରୁ ପାଇବାକୁ ଦୁଇ ଦିନ ଅନଶନ କରିଥିଲେ । ସେତେବେଳେ କଏଦୀମାନଙ୍କଠାରେ କାଗଜ କଲମ ଓ ପେନ୍‌ସିଲ୍ ରଖିବା ନିଷିଦ୍ଧ ଥିଲା । କିନ୍ତୁ କୌଣସି ପ୍ରକାରେ ସେ ଖଣ୍ଡେ ଛୋଟ ସ୍ଲେଟ ଯୋଗାଡ଼ କରିଥିଲେ । ସେଇ ଜେଲରେ ତାଙ୍କ ସହିତ ଥିଲେ କେରଳର ଜଣେ ଶଂକରାଚାର୍ଯ୍ୟ । ରାହୁଳ ତାଙ୍କ

ସାହାଯ୍ୟରେ ପୁଣିଥରେ ଗଣିତ, ବୀଜଗଣିତ, ଜ୍ୟାମିତି, ଜ୍ୟୋତିର୍ବିଦ୍ୟା ବିଷୟସବୁ ପଢ଼ନ୍ତି । ସେତେବେଳେ ଜଣେ ଦୟାଳୁ ଆଂଲୋ ଇଣ୍ଡିଆନ କାରାଧକ୍ଷ ଜେଲରେ ପଢ଼ିବା ପାଇଁ ତାଙ୍କୁ କେତେକ ପିଲାଙ୍କ ବହି ଦେଇଥିଲେ । ସେ ସେଠି ବିରାଟ ମହାକାଶର ମାନଚିତ୍ର ଆଂକନ୍ତି । ଚାରୋଟି ଇଂରାଜୀ ଉପନ୍ୟାସକୁ (ମୌଳିକ ଭାବରେ ରହସ୍ୟମୂଳକ ଓ ଦୁଃସାହସିକ କାହାଣୀ) ସେ ହିନ୍ଦୀରେ ଅନୁବାଦ କରନ୍ତି । ଏହି ସମୟରେ ସେ ଫରାସୀ ଓ ଆବେସ୍ତାନ ଭାଷା ମଧ୍ୟ ଶିଖି ପକାନ୍ତି ।

୧୯୨୬ ମସିହାରେ ମିରଟରେ ହରନାମ ଦାସ, ପରେ ବ୍ରହ୍ମଚାରୀ ବିଶ୍ୱନାଥ ଏବଂ ତା ପରେ ଭିକ୍ଷୁ ଆନନ୍ଦ କୌଶଲ୍ୟାୟନଙ୍କ ସହିତ ସେ ସାକ୍ଷାତ କରନ୍ତି । ଏ ଦୁହେଁ ଶେଷ ଜୀବନ ପର୍ଯ୍ୟନ୍ତ ବଂଧୁ ଥିଲେ । ରାହୁଳ କାଶ୍ମୀର ଭ୍ରମଣ କରନ୍ତି ଏବଂ ସେଠୁ କାରଗିଲ ଦେଇ ଲାଦାକ ଯାଆନ୍ତି । ସେଠାରେ ତାଙ୍କର ଲାମା ସ୍ତାକ୍‌ସାଙ୍ଗ - ରସ୍ - ପାଙ୍କ ସଙ୍ଗେ ଦେଖା ହୁଏ । 'କାଲ୍ସୀ'ରେ ସେ ମୋହିନୀ ବିଦ୍ୟା ଆୟତ୍ତ କରି ନିଅନ୍ତି ଏବଂ ପରେ ସେ ତାକୁ କୌଣସି କୌଣସି ଲାମା ଉପରେ ପ୍ରୟୋଗ ମଧ୍ୟ କରନ୍ତି । ୧୯ ହଜାର ଫୁଟ ଉଚ୍ଚ ଖାରାଦୋଙ୍ଗଲା ପର୍ଯ୍ୟନ୍ତ ଯାଇ ସେଠି ସେ ଜଣେ ୬୦ ବର୍ଷ ବୟସ୍କ ଗିଂଝ ଲାମା ସାଙ୍ଗେ ଦେଖା କରନ୍ତି । ନୁମ୍ରାଠାରୁ ଲେହ ପର୍ଯ୍ୟନ୍ତ ସେ ଭ୍ରମଣ କରନ୍ତି । ସେବାର 'ମାନ-ଫା-ଗୋଣ୍ଡ' ସରୋବର ଦେଖି ସାରିଲା ପରେ ଚୁମୁର୍ତି-କିନ୍ନର ଏବଂ ସିମଳାର ଶେଷ ସୀମା ପର୍ଯ୍ୟନ୍ତ ଯାଇ ସେ ଫେରି ଆସନ୍ତି । ୧୯୨୬ ମସିହାରେ ତିବ୍‌ବତ ଯାତ୍ରା ରାହୁଲଙ୍କ ପରି ବାରବୁଲାଙ୍କ ପକ୍ଷରେ ସମ୍ଭବ ଥିଲା । ଏହି ଯାତ୍ରା ସମୟରେ ଗୋଟିଏ ତିବ୍‌ବତ କୁକୁରର ମୃତ୍ୟୁ ଦେଖି ତା ବିଷୟରେ ଏକ ଆବେଗମୟ ବର୍ଣ୍ଣନା ସେ କରିଛନ୍ତି । କୁକୁରର ନାଁ ଥିଲା ସେଂ-ତୁକ । ସେ ଲେଖିଛନ୍ତି ଯୋଉ ଆଖି ମୋର ମାତା ପିତା, ବା ସ୍ନେହମୟ ଜେଜେ ଓ ଜେଜେମାଙ୍କ ମୃତ୍ୟୁରେ ମଧ୍ୟ ଓଦା ହେଇ ନଥିଲା ସେଇ ଆଖି ଆଜି ଏଇ କୁକୁରର ମୃତ୍ୟୁରେ ଛଳଛଳ ହେଇ ଉଠିଲା । ମୁଁ ସେଇ କୁକୁରଟି ଉପରେ ସଂସ୍କୃତରେ ଆଠଟି ଶ୍ଲୋକର ଗୋଟିଏ ଶୋକାଂଜଳି ରଚନା କଲି । ସେଇ ଶ୍ଲୋକର ପ୍ରତ୍ୟେକ ସ୍ତବକରେ ଥିଲା ସେଂ-ତୁ ! ତ୍ୱଂ ପ୍ରୟାଣେ ।

ପଶ୍ଚିମ ତିବ୍‌ବତରେ ଗୋଟିଏ ଅଂଶ ଦେଖି ସେ ବୁଶହର, ରିହାଶଦ, ସୁମନାମ, କନାମ, ଚୀନୀ ଏବଂ ସ୍ପିତି ହେଇ ସେ ଫେରିଆସିଲେ । ପୁଣି ବିହାରକୁ ଗଲେ ଏବଂ ସକ୍ରୀୟ ରାଜନୀତିରେ ଯୋଗ ଦେଲେ । ଛପରାରେ ସେ ରାଜେନ୍ଦ୍ର ପ୍ରସାଦ ସଙ୍ଗେ ମିଶି

କୃଷକମାନଙ୍କ ସଭାରେ ଭାଷଣ ଦିଅନ୍ତି । ୧୯୨୬ ସାଲରେ ସେ ଗୌହାଟି ଗଲେ ଏବଂ ସେଠି କଂଗ୍ରେସ ଅଧିବେଶନରେ ଯୋଗ ଦିଅନ୍ତି । ଫରିଦପୁରରେ ସେ ମଘାରୁଲ ହକ୍ ସହିତ ଦେଖା କରନ୍ତି ଏବଂ ତାଙ୍କର ଆଧ୍ୟାତ୍ମଚେତନା ମୂଳକ ଗ୍ରନ୍ଥାବଳୀର ବଡ଼ ଗ୍ରନ୍ଥାଗାର ମଧ ପରିଦର୍ଶନ କରନ୍ତି । ୧୯୨୭ ମାର୍ଚ୍ଚ ୩୦ ତାରିଖରେ ସେ ଶେଷଥର ପାଇଁ ପରସା ଯାଆନ୍ତି ଏବଂ ସେଠି ପ୍ରତିଜ୍ଞା କରନ୍ତି ଯେ ଜମିଦାରୀ ପ୍ରଥା ଉଚ୍ଛେଦ ନ ହେବା ପର୍ଯ୍ୟନ୍ତ ସେ ଆଉ ସେଠାକୁ ଆସିବେ ନାହିଁ । କଲିକତାର ମହାବୋଧି ସୋସାଇଟି ସାହାଯ୍ୟରେ ସେ ଶ୍ରୀଲଙ୍କାର ବିଦ୍ୟାଳଂକାର ଜ୍ଞାନ ପୀଠକୁ ଯାଆନ୍ତି । ସେଠାରେ ସେ ୧୯୨୭ ମେ ୧୬ ତାରିଖ ଠାରୁ ୧୯୨୮ ଡିସେମ୍ବର ୧ ତାରିଖ ପର୍ଯ୍ୟନ୍ତ ଅର୍ଥାତ ଦୀର୍ଘ ୧୯ ମାସ ରହି କେବଳ ବୌଦ୍ଧଗ୍ରନ୍ଥ ପଢ଼ା ପଢ଼ି କରନ୍ତି । ତା ଫଳରେ ଭାରତର ସାଂସ୍କୃତିକ ଇତିହାସ ସେ ଭଲଭାବେ ହୃଦୟଙ୍ଗମ କରି ପାରିଲେ । ପୂର୍ବରୁ ସେ ହଜାରୀବାଗ ଜେଲରେ ଥିଲାବେଳେ ସେ ବ୍ରାହ୍ମୀ ଲିପି ଶିଖିଥିଲେ ଏବଂ 'ଏପ୍ରିଗ୍ରାଫିକା ଇଣ୍ଡିକା' ପତ୍ରିକାର ପୂରାତନ ସଂଖ୍ୟା ସବୁକୁ ପଢ଼ିଥିଲେ । ସେଠାରେ ସେ ପାଲୀ ଟେକ୍ସଟ୍ ସୋସାଇଟି ଦ୍ୱାରା ପ୍ରକାଶିତ ଏବଂ ରୟାଲ ଏସିଆଟିକ ସୋସାଇଟିର ଲଣ୍ଡନ, ବମ୍ବେ, ବଂଗଳା ଏବଂ ଶ୍ରୀଲଙ୍କାର ଶାଖା ଦ୍ୱାରା ପ୍ରକାଶିତ ପତ୍ରିକା ସବୁକୁ ଗଭୀର ଅଧୟନ କରିଥିଲେ । ପ୍ରଥମେ ସେ ତାଙ୍କର ବ୍ରାହ୍ମଣ ସଂସ୍କାରରୁ ସୃଷ୍ଟ ଈଶ୍ୱର ବିଶ୍ୱାସ ସହିତ ବୌଦ୍ଧ ମତର ଗୋଟାଏ ସମନ୍ୱୟ ରକ୍ଷାର ଚେଷ୍ଟା କରିଥିଲେ । କିନ୍ତୁ ସେତକ ସେ ବେଶୀ ଦିନ ରକ୍ଷା କରି ପାରି ନଥିଲେ । ସାର.ଡ଼ି.ବି. ଜୟତିଲକ ଅବଶ୍ୟ ରାହୁଲଙ୍କର ଆବଶ୍ୟକ ହେଉଥିବା ବହିଗୁଡ଼ିକୁ ପଠେଇ ଦେଇଥିଲେ ।

୧୯୨୭ ଡ଼ିସେମ୍ବର ମାସରେ ମାନ୍ଦ୍ରାଜରେ ଜାତୀୟ କଂଗ୍ରେସ ଅଧିବେଶନ ଶେଷ ହେବା ପରେ ରାଜେନ୍ଦ୍ର ପ୍ରସାଦ ଶ୍ରୀଲଙ୍କା ଯାଇଥିଲେ । ସେଠାରେ ରାହୁଳ ତାଙ୍କର ପଥପ୍ରଦର୍ଶକ ଥିଲେ । ରାହୁଳଙ୍କ ଲେଖକ ଜୀବନ ଏଇଠୁ ଆରମ୍ଭ କହିଲେ ଚଳେ । ଏଲାହାବାଦରୁ ପ୍ରକାଶ ପାଉଥିବା ହିନ୍ଦୀ ମାସିକ ପତ୍ରିକା ସରସ୍ୱତୀରେ ରାହୁଳ ଶ୍ରୀଲଙ୍କା ସମ୍ପର୍କରେ ଲେଖିବା ଆରମ୍ଭ କରନ୍ତି । ସେଇ ସମୟରେ କିଛି ସ୍ଥାନୀୟ ଛାତ୍ରଙ୍କୁ ସେ ସଂସ୍କୃତ ଶିକ୍ଷା ଦେଇଥିଲେ । ଏବଂ ନିଜେ ଖୁବ ଭଲଭାବେ ଶିଖିଲେ ସିଂହଳୀ ଓ ଫରାସୀ । ତା ପରେ ପୁଣି ଥରେ ତିବ୍‌ବତ ଯିବାର ଇଚ୍ଛା ନେଇ ସେ ଭାରତ ଫେରି ଆସିଲେ । ରାହୁଳ ତିବ୍‌ବତ ଯାଆନ୍ତି ଚାରିଥର । ୧୯୨୯, ୧୯୩୪, ୧୯୩୬ ଏବଂ ୧୯୩୮ ।

ବକ୍ତିଆର ଖୀଲିଜୀ ଯେତେବେଳେ ତାଙ୍କର ସୈନ୍ୟସାମନ୍ତ ନେଇ ନାଳନ୍ଦା ଓ ବିକ୍ରମଶିଳା ବିଦ୍ୟାପୀଠ ଆକ୍ରମଣ କରନ୍ତି ସେତେବେଳେ ବୌଦ୍ଧ ଭିକ୍ଷୁମାନେ ହାତଲେଖା ପୋଥିପତ୍ର ଏବଂ ତାଳ ପତ୍ରର ଗ୍ରନ୍ଥ ସବୁ ନେଇ ସେଠୁ ପ୍ରାଣ ବଞ୍ଚେଇବା ପାଇଁ ନେପାଳ ଓ ଆସାମ ଦେଇ ତିବ୍‌ବତ ପଳାଇ ଆସନ୍ତି ।

ଭାରତୀୟ ରେଖାଚିତ୍ର ସହିତ ଚୀନ୍ ଦେଶର ଦୃଶ୍ୟ କଳାର ସମନ୍ୱୟ ହୁଏ ମୂଳତଃ ବଜ୍ରଯାନ, ଦେବମାଳା ଓ ସ୍ଥାନୀୟ ଲୋକଶିଳ୍ପମାନଙ୍କରେ । ତାଳପତ୍ରରେ ଗ୍ରନ୍ଥ ଏବଂ ପୋଥି ସବୁ ଭାରତରୁ ତିବ୍ବତ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଆସେ । ତିବ୍‌ବତର ସମ୍ରାଟ୍ ଶ୍ରାଂ-ବତସାନ-ସାମ-ପୋ (୬୩୦-୬୯୩)ରେ ତାଙ୍କ ଦରବାରରେ ଏକଥା ଉଲ୍ଲେଖ ଅଛି । ଏହି ଭାବଧାରା ଓ କର୍ମ ପଦ୍ଧତି ୯-୧୩ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ଏହି ସମୟରେ ଏକ ହଜାର ସଂସ୍କୃତ ଓ ପାଲି ଭାଷାର ପୁସ୍ତକ ଭୋଟ ଭାଷାରେ ଅନୂଦିତ ହୋଇଥିଲା । ଏହି ପୁସ୍ତକରେ କେବଳ ଯେ ବୌଦ୍ଧ ଧର୍ମ ଓ ଦର୍ଶନ ବିଷୟରେ ନୂଆ ନୂଆ କଥା ଥିଲା ତା ନୁହେଁ । ତା ସହିତ ହିନ୍ଦୁ ବୈଦିକ ଓ ଜୈନ ପରମ୍ପରା ବିଷୟରେ ମଧ ଅନେକ କଥା ଥିଲା । ତାର କାରଣ ପୁସ୍ତକଗୁଡ଼ିକ ହଜି ଯାଇଛି ବୋଲି ମନେ ହେଉଥିଲେ ମଧ ସେ ସବୁ ତିବ୍‌ବତି ଲାମାମାନଙ୍କ ଠାରେ ସୁରକ୍ଷିତ ଥିଲା । କନ୍‌ଜୁର ଓ ତନଜୁରରେ ଏମିତି ପ୍ରାୟ ୧୦ ହଜାର ଭାରତୀୟ ଗ୍ରନ୍ଥ ରହି ଯାଇଛି । ରାହୁଳ ଏଇ ସବୁ ବହୁମୂଲ୍ୟ ପୋଥି ସବୁ ସେଠୁ ସଂଗ୍ରହ କରି ଆଣିବା ପାଇଁ ଚାରିଥର ତାଙ୍କୁ ସେଠାକୁ ଯିବାକୁ ପଡ଼ିଥିଲା । ରାହୁଳ ପ୍ରଥମେ ସଂସ୍କୃତରେ ତିବ୍‌ବତି ଭାଷାର ବ୍ୟାକରଣ ଓ ପ୍ରାମଣିକ ଭାଷାର ପାଠମାଳା ଲେଖିଲେ । ରାହୁଳ ହିଁ ପ୍ରଥମେ ଧର୍ମକୀର୍ତ୍ତି, ସୁବଂଧୁ ଓ ଅସଙ୍ଗ ପରି ବୌଦ୍ଧ ନୈୟାୟିକଙ୍କର ଗ୍ରନ୍ଥ ସମୂହର ପୁନରୁଦ୍ଧାର ଓ ସୁରକ୍ଷା ପାଇଁ ଚେଷ୍ଟା କରିଥିଲେ । ପରେ ପ୍ରସିଦ୍ଧ ଋଷ ଦାର୍ଶନିକ, ବୌଦ୍ଧ ନ୍ୟାୟଶାସ୍ତ୍ରର ଲେଖକ ଅଧାପକ ଷ୍ଟେରବଟ୍‌ସକୀ ତାଙ୍କର ଲେନିନଗ୍ରାଡ଼ ବିଶ୍ୱବିଦ୍ୟାଳୟର ସ୍ମୃତି କଥାରେ ଲେଖିଛନ୍ତି ଯେ ପୃଥିବୀରେ କେବଳ ଜଣେ ମାତ୍ର ଅଛନ୍ତି ଯେ କି ତାଙ୍କ ପରେ ଏ ବିଷୟରେ ଯଥାର୍ଥ ଭାବରେ ପଢ଼ାଇ ପାରିବେ - ସେ ହେଉଚନ୍ତି ରାହୁଳ ସଂକୃତାୟନ । ରାହୁଳ ସୋଭିଏତ ଋଷିଆ ଦ୍ୱାରା ନିମନ୍ତ୍ରିତ ହେଇ ଲେନିନଗ୍ରାଡ଼ ବିଶ୍ୱବିଦ୍ୟାଳୟର ଅଧାପକ ପଦରେ ନିଯୁକ୍ତ ହୁଅନ୍ତି । ଜୀବନର ଶେଷ ଆଡ଼କୁ ଶ୍ରୀଲଙ୍କାର ବିଦ୍ୟାଳଂକାର ବିଶ୍ୱବିଦ୍ୟାଳୟରେ ମଧ ଅଧାପକ ପଦରେ ନିଯୁକ୍ତି ପାଇଁ ନିମନ୍ତ୍ରଣ ପାଇଥିଲେ । କିନ୍ତୁ ଭାରତର କୌଣସି ବିଶ୍ୱବିଦ୍ୟାଳୟ ତାଙ୍କୁ

ଅଧ୍ୟାପନା ପାଇଁ ଅନୁମୋଦନ କିମ୍ବା ଅନୁରୋଧ ଜଣାଇ ନାହାନ୍ତି । ତାର କାରଣ ରାହୁଳଙ୍କର କୌଣସି ସ୍କୁଲ କଲେଜ୍ ଡିଗ୍ରୀ ବା ସାର୍ଟିଫିକେଟ ଉପାଧି ନଥିଲା । ଆମ ଶିକ୍ଷା ବ୍ୟବସ୍ଥା ଯେ କେତେ ହୀନମନ୍ୟତା ଭିତର ଦେଇ ଗତି କରୁଚି ତାହା ଏଇଥିରୁ ଜଣାପଡ଼େ ।

୧୯୨୮ ମସିହାରେ ତିବ୍ବତ ଯିବା ଏତେ ସହଜ ନଥିଲା । ନେପାଳ ଦେଇ ଗୋପନରେ ଯିବାକୁ ପଡୁଥିଲା । ସେ ଶିବରାତ୍ରୀ ଦିନ ତୀର୍ଥଯାତ୍ରୀର ସୁଯୋଗ ନେଇ ରକ୍ସଲ ଓ ଅମଲେଖଗଂଜ ଦେଇ ନେପାଳ ଯାଆନ୍ତି । ଗୋଟିଏ ଖୋଲା ଟ୍ରକରେ ସେ ଯାଇ କାଠମାଣ୍ଡୁରେ ପହଞ୍ଚିଲେ । କାଠମାଣ୍ଡୁର ମହାବୌଦ୍ଧସ୍ତୁପରେ ସେ ତୁକପା ଲାମାଙ୍କ ସହିତ ସାକ୍ଷାତ କରନ୍ତି । ଲାଡ଼ାକର ହେମିସ ଲାମାଙ୍କ ପାଖରୁ ତାଙ୍କର ଗୋଟିଏ ଭଲ ପ୍ରଶଂସା ପତ୍ର ମଧ୍ୟ ଥିଲା । ସେଠାରେ ରାହୁଳ ନେପାଳୀ ଭାବରେ ତୁକ୍-ପା ଲାମାଙ୍କ ଶିଷ୍ୟମାନଙ୍କ ସହିତ ଯୋଗାଯୋଗ କରନ୍ତି । ଲାମାଙ୍କ ସହିତ ରାହୁଳଙ୍କ ଯୋଗଦେବାର କଥାଥିଲା ଏଲମନ ରେ । କିନ୍ତୁ ଲାମା କେବେବି ସେଠାକୁ ଯାଆନ୍ତି ନାହିଁ । ସେ ଯାଇଥିଲେ 'ଏଞ୍ଚନାମକୁ', ସେ ଏପରି କିଛି ତିବ୍ବତର ଭ୍ରାମ୍ୟମାଣ ବ୍ୟବସାୟୀମାନଙ୍କ ସହିତ ମିଳିତ ହୋଇଥିଲେ ଯୋଉମାନେ ଲୁଣ ବଦଳରେ ଚାଉଳର ଆଦାନ ପ୍ରଦାନ ପାଇଁ କାମ କରୁଥିଲେ । ରାହୁଳ ଭାତକୋସୀ ଓ ଭାତପାଣି ହେଇ ତୁକ-ପା ଲାମାଙ୍କ ସଂଗେ ଦେଖା କରି ତାଙ୍କ ଦଳରେ ଯୋଗ ଦିଅନ୍ତି । ନେପାଳର ସୀମାନ୍ତ ସୈନ୍ୟ ଯେତେବେଳେ ତାଙ୍କୁ ତାଙ୍କ ନାମ ପଚାରିଲେ ସେତେବେଳେ ସେ ତାଙ୍କା ନାଁ ଛେବାଂ ବୋଲି କହିଲେ । ସେ ମଧ୍ୟ ନିଜର ଜନ୍ମ ଖୁନୁର (କିନ୍ନାଭର)ରେ ବୋଲି କହନ୍ତି ଏବଂ ଅବତାର ରଂ ଲାମାର ଶିଷ୍ୟ ବୋଲି କହନ୍ତି । ତା ପରେ ରାହୁଳ ତିବ୍ବତ ଯାତ୍ରା ପାଇଁ ଖୁବ ଉତ୍କଣ୍ଠିତ ହେଇ ଉଠିଲେ । କିନ୍ତୁ ତାଙ୍କର ପ୍ରଦାନ ସମସ୍ୟା ହେଲା ଲାମଚିକ ବା ସୀମା ପାର ହେବା ପାଇଁ ଅନୁମତି ପତ୍ର । ବୁଦ୍ଧଗୟାରେ ସେ ଜଣେ ମଙ୍ଗୋଲୀୟ ଭିକ୍ଷୁଙ୍କ ସହିତ ପରିଚିତ ହେଇଥିଲେ । ତାଙ୍କ ସହିତ ତାଙ୍କର ଯୋଗାଯୋଗ ମଧ୍ୟ ଥିଲା । ତାଙ୍କ ସାହାଯ୍ୟରେ ସେ ଏହି ଅନୁଗତି ପତ୍ର ପାଇଗଲେ । ରାହୁଳ ସେଇ 'ଲୋବଜାଦଶେରାବ' (ଯାହାର ସଂସ୍କୃତ ଅନୁବାଦ 'ସୁମିତ ପ୍ରାଜ୍ଞ') ନାମକ ମଙ୍ଗୋଲୀୟ ଭିକ୍ଷୁଙ୍କ ଭାରୀ ବୋଝ ନିଜ କାନ୍ଧରେ ବହି ତାଙ୍କରି ସହିତ ଯାତ୍ରା କଲେ । ରାସ୍ତାରେ କିଛି ଲୋକ ମିଳିଗଲେ । କିନ୍ତୁ ରାସ୍ତା ନିରାପଦ ନ ଥିଲା । କାରଣ ଡକାୟତ ଓ ଲୁଟେରାର ଭୟ ଥିଲା । ତେଣୁ ଯେ କୌଣସି ଲୋକ ଡକାୟତ ଭଳି ଦେଖାଗଲେ ରାହୁଳ ସାଙ୍ଗେ ସାଙ୍ଗେ ମଥାର ଟୋପି ଖୋଲି, ଜିଭ

ଦେଖେଇ, ହାତ ଯୋଡ଼ି, ଦୟା କର ଦୟା କର ବୋଲି ଚିତ୍କାର କରିବାକୁ ଆରମ୍ଭ କରି ଦିଅନ୍ତି । କାରଣ କିଛି ବଣିକ ଲାମା ବା ସାଧୁସନ୍ଥ ବେଶରେ ଅନେକ ମୂଲ୍ୟବାନ୍ ଜିନିଷ ପତ୍ର ସାଙ୍ଗରେ ନେଇ ଯାଉଥିଲେ । ଡକାୟତ ଦଳ ପ୍ରଥମେ ଯାତ୍ରୀମାନଙ୍କୁ ହତ୍ୟା କରନ୍ତି, ତା ପରେ ତାର ସବୁ ଜିନିଷ ପତ୍ର ଖୋଜି ଦେଖନ୍ତି। ସୁଖର କଥା, କୌଶୀ ନଦୀର ଶୀତଳତମ ଜଳ ପାର ହେଲା ପରେ ସେ ଯେତେବେଳେ 'ଶୀକର'ରେ ପହଞ୍ଚିଲେ ସେଠି ଜିନିଷପତ୍ର ବୋହିବା ପାଇଁ ଗଧ ମିଳିଗଲା । ବ୍ରହ୍ମପୁତ୍ର ତୀରରେ ଟାଟୁ ଘୋଡ଼ାରେ ଚଢ଼ି ସେ ଧୀରେ ଧୀରେ ଯାଇ ସେ ନାରଥାଂରେ ପହଞ୍ଚିଲେ । ସେଠା ମଠରେ ୧୧ଶ ଶତାବ୍ଦୀର ୩୩୮ଟି ଗ୍ରନ୍ଥ ଥିଲା । ତାଛଡ଼ା ଭାରତୀୟ ଗ୍ରନ୍ଥର ଅନୁବାଦ ମଧ୍ୟ ଥିଲା । ସେ ତାସି ଲୁମ୍‌ପୋ ଗୁମ୍ଫାରେ ପହଞ୍ଚି ତାସି ଲାମାଙ୍କ ସହିତ ଦେଖା କଲେ ଯେ କି ଆଗରୁ ଚୀନ୍ ଦେଶକୁ ପଳାଇ ଯାଇଥିଲେ । ଦଲାଇଲାମାଙ୍କ ପରେ ଏଇ ସମୟରେ ସେ ହିଁ ଥିଲେ ସବୁଠାରୁ ପ୍ରଭାବଶାଳୀ ଧର୍ମଗୁରୁ । ପରେ ଶିଗାଉଟ ଠାରୁ ରାହୁଲ ଡିକିଘୋମୋ, ଜରାଲା ଗିରିପଥ, ନାଗାଚେ, ଡାମ୍ୟେଖାମ୍ବାଲା ଦେଇ ଯାଇ ଛୁଭରୀ ଠାରୁ ନୌକାରେ ବ୍ରହ୍ମପୁତ୍ର ପାର ହେଇ ପୁଣି ଟାଟୁ ଘୋଡ଼ାରେ ଚଢ଼ି ଲାସାରେ ପହଞ୍ଚିଲେ । ୧୯୨୯ ମସିହା ଜୁଲାଇ ୧୯ ତାରିଖରେ ରାହୁଲ ପୋଟାଲା ମଠରେ ଥିବା ସୁନାର ଛତା ଦେଖିଲେ । ଦୀର୍ଘ ତିନି ଘଣ୍ଟା ଚାଲିବା ପରେ ସେ ଧର୍ମ ସାହୁର ବାସ ଭବନରେ ପହଞ୍ଚିଲେ । ଧର୍ମ ସାହୁ ରାହୁଲଙ୍କୁ ସ୍ୱାଗତ ଜଣେଇଲେ । ରାହୁଲ ପୂର୍ବରୁ ଧର୍ମ ସାହୁ ସହିତ ନେପାଳରେ ଦେଖା କରିଥିଲେ ଏବଂ ତାଙ୍କର ଦୁଇ ପୁତ୍ର ପୂର୍ଣ୍ଣମାନ ଓ ଜ୍ଞାନମାନ ସାହୁର ନାଁରେ ଲେଖା ଚିଠି ନେଇ ଯାଇଥିଲେ ।

ଶେଷରେ ରାହୁଲ ତିବ୍‌ବତର ରାଜଧାନୀ ଲାସାରେ ପହଞ୍ଚିଲେ । ବ୍ରିଟିଶ୍ ସରକାର ଅବଶ୍ୟ ଜାଣି ପାରି ନଥିଲେ ଯେ ସେ କୋଉ ଦେଶରୁ ସେଠାକୁ ଆସିଲେ । ତିବ୍‌ବତ ବିଦେଶୀମାନଙ୍କୁ ପସନ୍ଦ କରନ୍ତି ନାହିଁ । ରାହୁଲ ତେଣୁ ଠିକ୍ କଲେ ଯେ ସେ ନିଜକୁ ଦଲାଇଲାମାଙ୍କ ବୌଦ୍ଧ ଶିଷ୍ୟ ବୋଲି ପରିଚୟ ଦେବେ । ସେ ୧୫୧ଟି ସ୍ତବକର ଶ୍ଳୋକ ସଂସ୍କୃତରେ ରଚନା କରନ୍ତି ଏବଂ ସେ ସବୁକୁ ଭୋଟ ଭାଷାରେ ଅନୁବାଦ କଲେ । ସୁନ୍ଦର ଅକ୍ଷରରେ ଲେଖି ଦଲାଇଲାମାଙ୍କ ବିଶ୍ୱସ୍ତ ଶିଷ୍ୟ ନାଗ୍ରୀଚାଙ୍ଗଙ୍କ ଦ୍ୱାରା ପଠେଇ ଦିଅନ୍ତି ଏବଂ ତାକୁ ଲାମା ପଢ଼ି ଖୁବ୍ ଖୁସି ହେଲେ । ସେ ସେତେବେଳେ ରାହୁଲଙ୍କୁ ପ୍ରତିଶ୍ରୁତି ଦେଲେ ଯେ ସେ ଦିନେ ତାଙ୍କୁ ଆଲୋଚନା ପାଇଁ ନିମନ୍ତ୍ରଣ ଜଣାଇବେ । ଅବଶ୍ୟ ପରେ

ତାଙ୍କର ଆଉ ସେ କଥା ମନେ ରହିଲା ନାହିଁ । ରାହୁଳ ସେତେବେଳେ ଦେପୁଙ୍ଗ ଗୁମ୍ଫାକୁ ଗଲେ । ସେତେବେଳେ ସେଠାରେ ସାତ ହଜାର ବୌଦ୍ଧ ଭିକ୍ଷୁ ବିଭିନ୍ନ ଦେଶରୁ ଆସି ଅଲଗା ଅଲଗା 'ଖାମଜାନ' ବା ଛାତ୍ରାବାସରେ ରହିଥିଲେ । କିନ୍ତୁ ଭାରତୀୟମାନଙ୍କ ପାଇଁ ସେପରି କୌଣସି ଛାତ୍ରାବାସ ନଥିଲା । ରାହୁଳ ଛୋଟ ଛୋଟ କାଗଜରେ ୧୬ ହଜାର ଭୋଟ ଶବ୍ଦ ଲେଖି ରଖିଥିଲେ ଏବଂ ନେପାଳୀ ଓ ସଂସ୍କୃତ ଭାଷାରେ ତାର ଅର୍ଥ ମଧ୍ୟ ଲେଖି ରଖିଥିଲେ । ପ୍ରଥମେ ସେ ଭାବିଥିଲେ ଯେ ସେ ସେଠି ଅନ୍ତତଃ ତିନି ବର୍ଷ ପର୍ଯ୍ୟନ୍ତ ରହିବେ ଏବଂ ତିବ୍‌ବତରେ ଥିବା ବୌଦ୍ଧ ଗ୍ରନ୍ଥଗୁଡ଼ିକ ପଢ଼ି ତା ଉପରେ ଗବେଷଣା କରିବେ । ପରେ ତାଙ୍କର ଆର୍ଥିକ ଅବସ୍ଥା ଖୁବ୍ ଖରାପ ହୋଇ ପଡ଼ିଲା । ସେତେବେଳେ କାଶୀ ବିଦ୍ୟାପୀଠର ଆଚାର୍ଯ୍ୟ ନରେନ୍ଦ୍ର ଦେବ ତାଙ୍କ ପାଇଁ ୫୦ଟଙ୍କାର ଛାତ୍ରବୃତ୍ତିର ବ୍ୟବସ୍ଥା କରନ୍ତି । ତା ପରେ ଶ୍ରୀଲଙ୍କାରୁ ଭଦନ୍ତ ଆନନ୍ଦ କୌଶଲ୍ୟାୟନ ତାଙ୍କୁ ଦୁର୍ଲଭ ପୁସ୍ତକର ଅଧ୍ୟୟନ ଓ ତଂଙ୍ଗା ଚିତ୍ର କିଣିବା ପାଇଁ ତିନି ହଜାର ଟଙ୍କା ପଠାଇବା ପାଇଁ ପ୍ରତିଶ୍ରୁତି ଦିଅନ୍ତି । ରାହୁଳ 'ସାମଇଏ' ରେ ଥିବା ସବୁଠାରୁ ପ୍ରାଚୀନ ମହାବିହାର ଦେଖିବାକୁ ଯାଆନ୍ତି । ସେଠି ନାଳନ୍ଦାର ଭିକ୍ଷୁ ଶାନ୍ତି ରକ୍ଷିତଙ୍କର ସମାଧି ଅଛି । ତେବେ ଏହି ମହାବିହାର ସଂଲଗ୍ନ ସମାଧି ନଷ୍ଟ ହୋଇ ଯାଇଛି । ଗେ-ଗରଲିଂ (ଭାରତୀୟ ଆଇସଲ୍ୟାଣ୍ଡ) ଯେଉଁଠି ଭାରତୀୟ ପଣ୍ଡିତମାନେ ଏକାଦଶ ଶତାବ୍ଦୀରେ ଥିଲେ ଏବଂ ଶୋଚନୀୟ ଅବସ୍ଥାରେ ଥାଇ ମଧ୍ୟ ସଂସ୍କୃତ ଗ୍ରନ୍ଥ ସମୂହକୁ ତୀବ୍‌ବତୀୟ ଭାଷାରେ ଅନୁବାଦ କରିଥିଲେ, ଏଠାରେ ଗୋଟିଏ ଗ୍ରନ୍ଥାଳୟରେ ଏପରି କେତେକ ଦୁର୍ଲଭ ଗ୍ରନ୍ଥ ଥିଲା ଯାହା ଦୀପଙ୍କର ଶ୍ରୀଜ୍ଞାନଙ୍କ ମତରେ ବିକ୍ରମଶୀଳାରେ ମଧ୍ୟ ନଥିଲା । କିନ୍ତୁ କିଛି ଦିନ ପୂର୍ବରୁ ଏହି ଦୁର୍ମୂଲ୍ୟ ଗ୍ରନ୍ଥାଗାରଟି ପୋଡ଼ି ଯାଏ । ରାହୁଳ ସେଥିପାଇଁ ସେଠାରୁ ଗୋଟିଏ ବୋଲି ସଂସ୍କୃତ ଗ୍ରନ୍ଥ ପାଇ ନ ଥିଲେ । ପରେ ତିବ୍‌ବତରୁ କିଛି ଗ୍ରନ୍ଥ ଓ ଚିତ୍ର କିଣି ନେଇଥିଲେ । ୧୮ଟି ଟାଟୁ ଘୋଡ଼ାରେ ସେ ସବୁ ଲଦି ରାହୁଳ କାଲିମପଙ୍ଗ ପର୍ଯ୍ୟନ୍ତ ଆସିଥିଲେ । ଫେରିବା ରାସ୍ତାରେ ଶାଲୁ ବିହାର ତାଶୀ ଶୁକ୍‌ପୋ, ନାରଥାଂ, ଗୋଆନଚିକେ ପ୍ରଭୃତି ସ୍ଥାନମାନଙ୍କରେ ଯେଉଁ ସବୁ ଗ୍ରନ୍ଥ ଦେଖିଥିଲେ ତାକୁ ମଧ୍ୟ କିଣି ନେଇଥିଲେ । 'କନ୍‌ଜୁର' ଓ 'ତନ୍‌ଜୁର' ଛଡ଼ା ରାହୁଳ ନିଜ ସହିତ ୧୬୧୯ଟି ହାତଲେଖା ତବ୍‌ବତି ଗ୍ରନ୍ଥ ମଧ୍ୟ ନେଇ ଆସନ୍ତି । ଲାସାରୁ କାଲିପଙ୍ଗ ଆସିବାକୁ ତାଙ୍କୁ ୩୯ ଦିନ ସମୟ ଲାଗେ । ୨୪ ଏପ୍ରିଲ୍‌ଠାରୁ ୧୯୩୦ ମସିହା ୩ ଜୁନ ପର୍ଯ୍ୟନ୍ତ । ଯେଉଁ ପୁସ୍ତକ ସେ ଆଣିଥିଲେ ତାକୁ ସେ ପାଟଣା ମିଉଜିୟମକୁ

ଉପହାର ଦେଇ ଦେଲେ । ସେ ସବୁ କାଶୀ ପ୍ରସାଦ ଜୟସୁଆଲ ବିଭାଗରେ ସୁରକ୍ଷିତ ଅଛି ।

ରାହୁଲଙ୍କ 'କନ୍‌ଜୁର୍' ଓ 'ତନ୍‌ଜୁର'ର କାମ ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ବୁଝି ହୁଏ ଯେତେବେଳେ ଦେଖାଯାଏ ତିବ୍‌ବତି ତ୍ରିପିଟକର ତନ୍ତ୍ର ଓ ସୂତ୍ର ସଂହିତାର ସୂଚୀ କେବଳ ଜାପାନୀ ଭାଷାରେ ତାହା ପୁଣି ୧୯୩୬ ମସିହାରେ ପ୍ରକାଶିତ ଅନ୍ୟ କୌଣସି ଭାଷାରେ ସେ ବିଷୟରେ କିଛି ନ ଥିଲା । ରାହୁଲ ଏହି ଗ୍ରନ୍ଥର ଦୁଷ୍ପ୍ରାପ୍ୟ ଲାସା ସଂସ୍କରଣ ଆଣିଥିଲେ । ତାଛଡ଼ା ଧର୍ମ, ଦର୍ଶନ, ଇତିହାସ, ଜୀବନୀ, ଶିଳ୍ପକଳା, ଜ୍ୟୋତିଷ, ଚିକିତ୍ସା, ଭୂଗୋଳ ଇତ୍ୟାଦି ବିଷୟରେ ପୁସ୍ତକ ସବୁ ମଧ୍ୟ ନିଜ ସହିତ ନେଇ ଆସିଥିଲେ । ଦର୍ଶନର ଗ୍ରନ୍ଥଗୁଡ଼ିକ ମୁଖ୍ୟତଃ ଥିଲା ନାଗାର୍ଜୁନର ମାଧ୍ୟମିକ ଶାଖା ଏବଂ ଅସଙ୍ଗର ଯୋଗାଚାର ଶାଖା ବିଷୟରେ – ଏ ଦୁଇଜଣ ଥିଲେ ପ୍ରସିଦ୍ଧ ବୌଦ୍ଧ ନ୍ୟାୟୟିକ । ସପ୍ତମ ଠାରୁ ଦଶମ ଶତାବ୍ଦୀ ଭିତରେ ଲିଖିତ ତାନ୍ତ୍ରିକ ତିବ୍‌ବତି ଗ୍ରନ୍ଥ ମଧ୍ୟ ଏହି ସଂଗ୍ରହ ଭିତରେ ଥିଲା । ରାହୁଲ ତାଙ୍କ ନିଜ ସାଥିରେ ପଦ୍ମ ସମ୍ଭବ, ବୁସିତାନ ଏବଂ ତାରାନାଥଙ୍କ କ୍ରିୟାତନ୍ତ୍ର ଓ ଚର୍ଯ୍ୟାତନ୍ତ୍ର ମଧ୍ୟ ନେଇ ଆସନ୍ତି । ତା ଛଡ଼ା ସାହିତ୍ୟ ବିଷୟରେ ଅନେକ ବହି ତାଙ୍କ ସଂଗ୍ରହ ଭିତରେ ଥିଲା – ଦଣ୍ଡୀର 'କାବ୍ୟାଦର୍ଶ' ସମ୍ପର୍କରେ 'ଇନାପା'ର ଦୁଇଟା ଟିକା ଗ୍ରନ୍ଥ, "କଳ୍ପଲତା"ର ଦୁଇଟା ତିବ୍‌ବତୀୟ ଅନୁବାଦ ଏବଂ ପାଣିନୀର 'ଧାତୁପାଠ' ବିଷୟରେ ଦୁର୍ଗା ସିଂଙ୍କ ଆଲୋଚନା ଇତ୍ୟାଦି । ଗୋଟିଏ ଐତିହାସିକ ଗ୍ରନ୍ଥରେ ମଗଧରେ ମୁସଲମାନ ବିଜୟ, ଉଦନ୍ତପୁର ଓ ବିକ୍ରମଶିଳାରେ ବିଶ୍ୱବିଦ୍ୟାଳୟର ଧ୍ୱଂସ ସମ୍ପର୍କରେ ବିବରଣୀ ସବୁ ମିଳେ । ଡ.ଏ.ଏସ୍. ଅଲତକଙ୍କର ପ୍ରାଚୀନ ଭାରତୀୟ ଶିକ୍ଷା ବିଷୟ ଗ୍ରନ୍ଥରେ ଏ କଥା ବିସ୍ତାରିତ ଭାବେ ଲେଖା ଅଛି । ବୌଦ୍ଧ ମହାଯାନୀ ଓ ବଜ୍ରଯାନୀ ଦେବ ଦେବୀର ୧୩୦ଟି ବସ୍ତ୍ରରେ ଅଂକା ଚିତ୍ର, ବା ପଟକୁ ନେଇ ୧୯୩୪ ଠାରୁ ୧୯୩୮ ସାଲ ଭିତରେ ରାହୁଲ ତିନି ଥର ତିବ୍‌ବତ ଯାଆନ୍ତି ଓ ସେଠାକାର ମଠରୁ କିଛି ଦୁର୍ଲଭ ବସ୍ତୁ ସଂଗ୍ରହ କରନ୍ତି । ପ୍ରଥମେ ତିବ୍‌ବତି ବ୍ୟାକରଣ ଓ ତିନି ଖଣ୍ଡି ଶିଶୁ ପାଠ୍ୟ ଗ୍ରନ୍ଥ ନାଗରୀ ଭାଷାରେ ଲେଖିଲେ । ଧର୍ମକୀର୍ତ୍ତିର 'ପ୍ରମାଣବାର୍ତ୍ତିକା' ସେ ନେଇ ଆସିଥିଲେ । ଖଣ୍ଡେ ତିବ୍‌ବତି ହିନ୍ଦୀ କୋଷ ସଂକଳିତ କରିଥିଲେ ଯାହାର ପ୍ରଥମ ଖଣ୍ଡ ତାଙ୍କର ମୃତ୍ୟୁ ପରେ ସାହିତ୍ୟ ଏକାଡ଼େମୀ ପ୍ରକାଶ କରିଥିଲେ ।

ରାହୁଲଙ୍କ ଜୀନବୃତ୍ତାନ୍ତ ଆଗରୁ କୁହାଯାଇଚି । ତିବ୍‌ବତ ଯାତ୍ରା ତାଙ୍କ ଜୀବନର ମୁଖ୍ୟ

ଉଦ୍ଦେଶ୍ୟ ନୁହେଁ । ୧୯୩୦ ମସିହାରେ ସେ ଗଲେ ଶ୍ରୀଲଙ୍କା । ୧୯୩୧ ରେ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ସତ୍ୟାଗ୍ରହରେ ଅଂଶ ଗ୍ରହଣ କରନ୍ତି । ପୁଣି ଶ୍ରୀଲଙ୍କା ଯାଆନ୍ତି ତୃତୀୟ ଥର ପାଇଁ ୧୯୩୧-୩୨ରେ । ୧୯୩୨-୩୩ରେ ଇଉରୋପ ଭ୍ରମଣ ସମୟରେ ତାଙ୍କର ସାକ୍ଷାତ ହୁଏ କିଛି ପ୍ରାଚ୍ୟ ବିଦ୍ୟା ବିଶାରଦମାନଙ୍କ ସହିତ । ସେତେବେଳେ ସେ ଇଂଲଣ୍ଡ, ଫ୍ରାନ୍ସ ଓ ଜର୍ମାନୀ ପ୍ରଭୃତି ଦେଶ ଭ୍ରମଣ କରନ୍ତି । ୧୯୩୫ ମସିହାରେ କିଛି ମାସ ସେ କଟେଇଲେ ଜାପାନ, କୋରିଆ ଓ ମାଞ୍ଚୁରିଆରେ। ୧୯୩୫ରେ ସେ ମାଞ୍ଚୁରିଆରୁ ଟ୍ରେନ୍‌ରେ ଯାତ୍ରା କରନ୍ତି ସୋଭିଏତ ଋଷିଆକୁ । ତା ପରେ ସେଇ ୧୯୩୫ ଅଗଷ୍ଟ ୨୩ ତାରିଖରୁ ଦୀର୍ଘ ୭ ଦିନ ଯାତ୍ରା ପରେ ପହଞ୍ଚିଲେ ମସ୍କୋରେ । ୧୯୩୫, ସେପ୍ଟେମ୍ବର ୮ ରୁ ୨୧ ସେପ୍ଟେମ୍ବର ପନ୍ଦର ଦିନ କାଳ କଟେଇଲେ ମସ୍କୋରେ । ତତ୍ତ୍ୱଦର୍ଶୀ ପଣ୍ଡିତ ଉଲଡେନ୍‌ବର୍ଗଙ୍କ ସହିତ ତାଙ୍କର ଦେଖା କରିବାର ଇଚ୍ଛା ଥିଲା । କିନ୍ତୁ ସେତେବେଳକୁ ଉଲଡ଼େନବର୍ଗ ଯେ ଜୀବିତ ନଥିଲେ ସେ କଥା ତାଙ୍କୁ ଜଣା ନଥିଲା । ଶ୍ଚେରବଟସକି ମଧ୍ୟ ସେତେବେଳେ ଥିଲେ ଲେନିନଗ୍ରାଡ଼ରେ । ସେଠାକୁ ତାଙ୍କୁ ଯିବାକୁ ଦିଆଗଲା ନାହିଁ । ମସ୍କୋରୁ ସେ ରେଳରେ ଗଲେ 'ବାକୁ' ସହରକୁ ଯୋଉଠି ସେ ଦେଖିଲେ 'ଅଗ୍ନି ମନ୍ଦିର' । ରାହୁଲ ତାକୁ କହନ୍ତି 'ଜ୍ୱାଳାମୟୀ'। ସେଠି ସେ ପଢ଼ିଲେ ନାଗରୀ ଲିପିର ଶିଳାଲେଖ । ସେଠୁ ସେ ଜାହାଜରେ ଗଲେ ଇରାନ ଏବଂ ସେଠି ସେ ଦେଖିଲେ ତେହେରାନ, ସିରାଜ ଓ ମାସେନ୍ଦ । ତା ପରେ ବେଲୁଚିସ୍ଥାନ ଦେଇ ସେ ଫେରିଲେ ଲାହୋର । ଡ଼. ପ୍ରବୋଧ ଚନ୍ଦ୍ର ବାଗଚି କଲିକତା ବିଶ୍ୱବିଦ୍ୟାଳୟ ପାଇଁ ରାହୁଲଙ୍କ ଠାରୁ 'କନଜୁର' କିଣିନେଲେ ।

ତାଙ୍କ ଆତ୍ମଜୀବନରୁ ଜଣାଯାଏ ଯେ ୪୨ ବର୍ଷ ବୟସରେ ସେ ଭୟଙ୍କର ଟାଇଫଏଡ଼ ରୋଗରେ ପଡ଼ିଥିଲେ । ପାଟନାର ଗୋଟିଏ ହସପିଟାଲରେ ସେ ପାଞ୍ଚଦିନ କାଳ ବେହୋସ ହେଇ ପଡ଼ିଥିଲେ । ପରେ ପୁଣି ୧୯୩୬ରେ ତିବ୍‌ବତ, ୧୯୩୭ରେ ଇରାନ ଏବଂ ୧୯୩୭-୩୮ରେ ରୁଷିଆ ଯାଇଥିଲେ। ୧୯୩୭ରେ ନଭେମ୍ବର ୧୭ରୁ ୧୯୩୮ ଜାନୁଆରୀ ୧୩ ପର୍ଯ୍ୟନ୍ତ ସେ ଥିଲେ ଲେନିନଗ୍ରାଡ଼ରେ । ସେଠି ତାଙ୍କର ଅଲୋଚନା ହୁଏ ଭାରତୀୟ ତିବ୍‌ବତ ବିଭାଗର ସେକ୍ରେଟେରୀ ଲୋଲା (ଏଲେନା) ନାମ୍ନି ଭଦ୍ର ମହିଳାଙ୍କ ସହ । ଲୋଲା ସେତେବେଳେ ସଂସ୍କୃତ-ତିବ୍‌ବତି ଭାଷାକୋଷ ତିଆରିରେ ବ୍ୟସ୍ତ ଥିଲେ ଏବଂ ସେ ଫରାସୀ, ଇଂରାଜୀ, ମଂଗୋଲୀୟ ଓ ଋଷ ଭାଷା ଜାଣିଥିଲେ । ରାହୁଳ

ଲୋଲାଙ୍କୁ ସଂସ୍କୃତ ଭାଷା ଓ ଲୋଲା ମଧ୍ୟ ରାହୁଲଙ୍କୁ ଋଷ ଭାଷା ଶିକ୍ଷା ଦେବାକୁ ଆରମ୍ଭ କଲେ । ଏମାନଙ୍କ ଆନ୍ତରିକତା ପରବର୍ତ୍ତୀ କାଳରେ ପ୍ରେମରେ ପରିଣତ ହୋଇ ବିବାହରେ ରୂପାନ୍ତରିତ ହୁଏ ।

ସେମାନେ ତାଙ୍କର ପ୍ରଥମ ପ୍ରେମ ପତ୍ର ସଂସ୍କୃତରେ ଲେଖନ୍ତି । ତାପରେ ସେମାନଙ୍କର ପୁତ୍ରଟିଏ ଜନ୍ମଗ୍ରହଣ କରେ ୧୯୩୮ ସେପ୍ଟେମ୍ବର ୫ରେ । ରାହୁଲ ତାର ନାମ 'ଅଗ୍ନି' ଋଷ ଭାଷାରେ "ଆଗୋନ" ରଖିବାକୁ ଚାହିଁଥିଲେ । କିନ୍ତୁ ତାର ନାମ ରଖାଗଲା 'ଇଗୋ', ରାହୁଲ ସେତେବେଳେ ତାକୁ ଦେଖିବାକୁ ପାଇ ନଥିଲେ । ୧୯୪୫ ଜୁଲାଇ ମାସରେ ସେ ଯେତେବେଳେ ପୁଣି ଋଷିଆ ଯାଆନ୍ତି ସେତେବେଳେ ପ୍ରଥମ ଥର ପୁଅକୁ ଦେଖନ୍ତି । ଏଇ ଯାତ୍ରା ତାଙ୍କର ଶେଷ ହେଲା ୧୯୪୭ ଅଗଷ୍ଟ ୧୭ ତାରିଖରେ । ତା ପରେ ଆଉ ତାଙ୍କର ସ୍ତ୍ରୀ ପୁତ୍ର ସହିତ ସାକ୍ଷାତ ହୋଇନାହିଁ । ଲୋଲା ଆଉ ଦ୍ୱିତୀୟ ଥର ବିବାହ ମଧ୍ୟ କରି ନାହାଁନ୍ତି । ୧୯୬୨ ମସିହାରେ ଯେତେବେଳେ ସ୍ମୃତିଭ୍ରଷ୍ଟ ରାହୁଲଙ୍କୁ ଚିକିତ୍ସା ପାଇଁ ଋଷିଆକୁ ଅଣାଗଲା ସେତେବେଳେ ଲୋଲା ତାଙ୍କ ସହିତ ଦେଖା କରିବାକୁ ଆସିଥିଲେ । ରାହୁଲ ତାଙ୍କୁ ଦେଖି କାନ୍ଦି ପକେଇଲେ କିନ୍ତୁ କଥା କହି ପାରିନଥିଲେ ।

ଏହି ବହିର ଲେଖକ (ପ୍ରଭାକର ମାଚୱେ) ୧୯୬୨ ମସିହା ଅକ୍ଟୋବର ମାସରେ ଯେତେବେଳେ ଲେନିନଗ୍ରାଡ଼ ଆସିଥିଲେ ସେତେବେଳେ ଲୋଲା ତାଙ୍କ ସହିତ ଦେଖା କରିଥିଲେ ଏବଂ ତାଙ୍କ ସହିତ ରାହୁଲ, ଶ୍ୱେରବଟସକୀ ଓ ଇଗୋର ପିଲା କାଳର ଗୋଟାଏ ଫଟୋ ଆଲବମ ଦେଖାଇଥିଲେ । ଲୋଲା ବା ଇଗୋ କେହି ହିନ୍ଦୀ ଜାଣିନଥିଲେ । ଏପରିକି ସେମାନଙ୍କ ଠାରେ ରାହୁଲଙ୍କର ଖଣ୍ଡିଏ ବୋଲି ବହି ନଥିଲା । ଏମାନେ କେହି କେବେ ଭାରତବର୍ଷକୁ ଆସି ନଥିଲେ ।

ରାହୁଲ ରାଜନୀତରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ୧୯୩୬ରେ ସେ ସ୍ୱତଃସ୍ଫୂର୍ତ୍ତ ଭାବେ କୃଷକ (କୃଷାଣ) ସଂଗ୍ରାମରେ ଯୋଗ ଦେଇଥିଲେ । ଫଳରେ ତାଙ୍କୁ ଜେଲ ଯିବାକୁ ପଡ଼ିଥିଲା । ସେଠି ସେ ଦୁଇ ଦୁଇ ଥର ଅନଶନ କରିଥିଲେ । ଥରେ ଦଶଦିନ ଓ ଆଉ ଥରେ ସାତଦିନ । ତାଙ୍କର ଏହି ଦୀର୍ଘ ଅନଶନର ଉଦ୍ଦେଶ୍ୟ ଥିଲା ଜେଲ ବ୍ୟବସ୍ଥାର ସଂଶୋଧନ । କିଛି ମାସ ପରେ ସେ ଜେଲରୁ ମୁକ୍ତି ପାଆନ୍ତି । ୧୯୪୦ରେ ଫେବୃଆରୀ ୨୪/୨୫ ତାରିଖରେ ସେ ମୋତିହାରୀ କୃଷକ ସମ୍ମିଳନୀର ସଭାପତି ଥିଲେ । ସେ ପୁଣି ଧରା ପଡ଼ିଲେ । ୧୯୪୦ରୁ ୧୯୪୨ ଭିତରେ ସେ ହଜାରିବାଗ ଓ ଦେଓଡ଼ି

ଜେଲରେ ରାଜବନ୍ଦୀ ଭାବରେ ୧୯ ମାସ କଟାଇଥିଲେ । ଏହି କାରାବାସ ସମୟରେ ହିଁ ରଚନା କରିଥିଲେ ତାଙ୍କର ସବୁଠାରୁ ସ୍ମରଣୀୟ ଗ୍ରନ୍ଥ 'ଦର୍ଶନ-ଦିଗ ଦର୍ଶନ' (୫୪୭ ପୃଷ୍ଠା) । ପୁସ୍ତକଟି ଥିଲା ହିନ୍ଦୀରେ । ଏହା ଗ୍ରୀକ୍, ଇସଲାମୀ, ଇଉରୋପୀୟ ଓ ଭାରତୀୟ ଦର୍ଶନ ତତ୍ତ୍ୱ ସହିତ ମାର୍କ୍ସ ବିଚାରଧାରା ଉପରେ ଆଧାରିତ ।

ତିନି ହଜାର ବର୍ଷର ଦର୍ଶନ ବିଷୟରେ ବୁଦ୍ଧିବାଦୀ ଓ ମାନବତାବାଦୀ ଦୃଷ୍ଟିଭଙ୍ଗୀରେ ଲେଖା ବହିଟି ତେଣୁ ପ୍ରତ୍ୟେକଙ୍କ ପାଖରେ ଇତିହାସ ହିସାବରେ ପରିଗଣିତ ହେବାର କଥା । ରାହୁଲ ତାଙ୍କ 'ଦର୍ଶନ-ଦିଗଦର୍ଶନ' ପୁସ୍ତକର ଶେଷ ଭାଗରେ ଭାରତୀୟ ଓ ବିଦେଶୀ ଦାର୍ଶନିକମାନଙ୍କର ଯୋଉ ତୁଳନାତ୍ମକ ସୂଚୀ ଦେଇଛନ୍ତି ସେଥିରେ ସେ କେବଳ ମାତ୍ର ଦୁଇଜଣ ଦାର୍ଶନିକଙ୍କ ନାମୋଲ୍ଲେଖ କରିଛନ୍ତି । ଅଥଚ ତାଙ୍କର ସମକାଳୀନ ଅନେକ ବିଦେଶୀ ଦାର୍ଶନିକଙ୍କ ନାମ ରହିଚି । ହେଗେଲ (୧୭୭୦-୧୮୩୧), ରାଜା ରାମମୋହନ ରାୟ (୧୭୭୨-୧୮୩୩), ମାର୍କ୍ସ (୧୮୧୮-୧୮୮୩), ଦୟାନନ୍ଦ (୧୮୨୪-୧୮୮୩) । ବିଦେଶୀମାନଙ୍କ ତାଲିକାରେ ଅନେକ ନାମ ଅଛି ଏବଂ ସେମାନଙ୍କ କୃତି ସମ୍ପର୍କରେ ଆଲୋଚନା ମଧ୍ୟ ଅଛି । ଯେମିତି ଦେକାର୍ତ୍ତ, ସ୍ପିନୋଜା, ଲକ୍, ବାର୍କଲେ, ଭଲଟେଆର, ହିଉମ, ରଷୋ, କାଣ୍ଟ, ଫିକଟେ, ସେଲିଂ, ସୋପେନ-ହାଓ୍ୱାର, ଫଏରବାକ୍, ସ୍ପେନସର, ଏଞ୍ଜେଲସ୍, ମାର୍କ, ଉଇଲିଅମ ଜେମସ୍, ନୀତ୍‌ସେ, ବ୍ରାଡ୍‌ଲେ, ବେଗର୍ସ, ଲେନିନ, ହ୍ୱାଇଟହେଡ୍ ଏବଂ ବାର୍ଟ୍ରାଣ୍ଡ ରସେଲ । ସବା ଶେଷରେ ସେ ଯେଉଁ ମୂଲ୍ୟବାନ ଗ୍ରନ୍ଥସୂଚୀ ତିଆରି କରିଛନ୍ତି ସେଗୁଡ଼ିକ ସେ ଜେଲରେ ବସି ଲେଖିଚନ୍ତି । ଅନେକ ସଂସ୍କୃତ, ପାଲି, ଆରବୀ ଗ୍ରନ୍ଥ ସହିତ କେବଳ ତିନିଜଣ ଭାରତୀୟ ଦାର୍ଶନିକଙ୍କ ଇଂରାଜୀ ବହିର ନାଁ ଲେଖିଚନ୍ତି । ସେମାନେ ହେଲେ ଏସ୍.ଏନ୍. ଦାସଗୁପ୍ତ, ଏସ୍. ରାଧାକୃଷ୍ଣନ ଏବଂ ଏମ.ସି.ବିଦ୍ୟାଭୂଷଣ । ଏବଂ ସେମାନଙ୍କ ସହିତ ତୁଳନା କରିଛନ୍ତି ମାର୍କ୍ସ, ଏଞ୍ଜେଲସ୍, ଫଏରବାକ୍ ଏବଂ ଶ୍ୱେରବଟସକୀଙ୍କର ପାଞ୍ଚଖଣ୍ଡ ପୁସ୍ତକ ।

ଜେଲରୁ ଖଲାସ ହେଲା ପରେ ପ୍ରାୟ ୩୪ ବର୍ଷ ପରେ ପୁଣି ଥରେ ଗାଁକୁ ଯିବାର ଗୋଟିଏ ମର୍ମସ୍ପର୍ଶୀ ଚିତ୍ର ସେ ଦେଇଚନ୍ତି ତାଙ୍କ ଜୀବନୀରେ । ଗାଁ'ର ସବୁ କିଛି ବଦଳିଛି ପୁଣି କିଛି ବଦଳିନି । ଲେଖିଚନ୍ତି କିପରି ତାଙ୍କ ସାଥି ଓ ବଂଧୁମାନେ ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣେଇଥିଲେ । ତାଙ୍କ ପ୍ରଥମ ସ୍ତ୍ରୀ ତାଙ୍କ ସହିତ ଦେଖା କରିବାକୁ ଆସିଲେ । କିନ୍ତୁ ରାହୁଲ ତାଙ୍କୁ ବିବାହର ଅନୁଷ୍ଠାନିକ ସମାଧାନ ହେବା ପୂର୍ବରୁ ଛାଡ଼ି ଚାଲିଆସିଥିଲେ ।

୧୯୪୨ ରୁ ୧୯୪୪ ପର୍ଯ୍ୟନ୍ତ ସେ ସମସ୍ତ ଭାରତବର୍ଷ ଭ୍ରମଣ କରିଚନ୍ତି । କେତେବେଳେ ରାଜନୈତିକ କାମରେ ଆଉ କେତେବେଳେ ସାହିତ୍ୟସଭା କାମରେ । ସେ ତାଙ୍କର ପ୍ରତିଦିନର ଡାଏରୀରେ ସେ ସବୁର ବିସ୍ତୃତ ବିବରଣୀ ଦେଇଚନ୍ତି । ଏବଂ ଏଇଥିରୁ ତାଙ୍କର ଜ୍ଞାନ ପିପାସା ଓ ଉତ୍ସୁକୀ ମନର ପରିଚୟ ମିଳେ । ଏଥିରେ ସେ କୋଉଠି ନେପାଳୀ ଦେବଦେବୀ ଓ ଭୂତ ପ୍ରେତର ୧୮ ରକମ ଗଣନା, ଆଉ କୋଉଠି ତିବ୍ବତର ୧୧ ପ୍ରକାର ପିଶାଚର କଥା, ପୁଣି ବହୁ ଦେଶର ଭାଷା, ରୀତିନୀତି, ଲୌକିକ ବିଶ୍ୱାସ ଇତ୍ୟାଦି କଥା ମଧ୍ୟ ଲେଖିଛନ୍ତି । ତାଙ୍କ ରଚନା ଏକ ଆଶ୍ଚର୍ଯ୍ୟଜନକ 'କୋଷ ସଂଗ୍ରହ' ଯୋଉଥିରୁ ନିମ୍ନଲିଖିତ ଅଦଭୁତ ଧରଣର ବିଷୟଗୁଡ଼ିକ ଜଣାଯାଏ । ସାଂସ୍କୃତିକ, ନୃବିଦ୍ୟା, ସମାଜ ବିଜ୍ଞାନ, ଅର୍ଥନୀତି, ଭାଷା ବିଜ୍ଞାନ, ଭ୍ରମଣ କାହାଣୀ, ଭୌଗୋଳିକ ଓ ଭୂସ୍ତର ବିଷୟ, ରାଜନୈତିକ ପରିସ୍ଥିତି, ପୁରାତତ୍ତ୍ୱ, ଧର୍ମ, ଗୁପ୍ତ ଧର୍ମୀୟ ଉପଶାଖା ଏବଂ ବହୁ ବିଶ୍ୱାସର ଇତିହାସ ସବୁ ଏକାସାଥିରେ ମିଶି ରହିଛି । ଏଇ ସବୁ ଜ୍ଞାତବ୍ୟ ବିଷୟଗୁଡ଼ିକ ସେ ଏପରି ଚମତ୍କାର ଓ ସହଜଶୈଳୀରେ ରଚନା କରିଛନ୍ତି ଯେ ମନେ ହୁଏ ସେ ଯେମିତି ପାଠକ ସହିତ ମୁହାଁମୁହିଁ କଥା କହୁଚନ୍ତି, ଏବଂ ଆଳାପ କରୁଚନ୍ତି, ଗପ କହୁଚନ୍ତି । ପାଠକର ସେଥିରେ ମୋଟେ ମନେ ହୁଏନା ଯେ ଲେଖକ ତା ଉପରେ ଗୋଟେ ବୋଝ ଚାପି ଦେଉଚନ୍ତି । ୧୯୩୮ ସାଲ ପରେ ରାହୁଳ ଅଧିକାଂଶ ସମୟ ଭାରତରେ ହିଁ ରହିଚନ୍ତି । କେବଳ ମାତ୍ର ଥରେ ଯାଇଥିଲେ ଚୀନ ଓ ଆଉଥରେ ଶ୍ରୀଲଙ୍କା ଅଧ୍ୟାପନା କାମରେ । ଏଇ ଯାତ୍ରାପରେ ସେ ଅସୁସ୍ଥ ହେଇ ପଡ଼ିଲେ । ଋଷିଆକୁ ତାଙ୍କର ଶେଷ ଯାତ୍ରା ବେଳେ ସେ ସ୍ମୃତିଭ୍ରଷ୍ଟ ହେଇ ପଡ଼ିଲେ । ୧୯୪୪ ମସିହାଠାରୁ ଏହି ଲେଖକ (ପ୍ରଭାକର ମାଚୱେ) ରାହୁଳଙ୍କ ସହିତ ଘନିଷ୍ଠତା ଲାଭ କରନ୍ତି ଏବଂ ରାହୁଳଙ୍କ ସହିତ ଖଣ୍ଡେ କୋଷ ରଚନା କରିବାକୁ ୧୯୪୮ ଠାରୁ ତାଙ୍କୁ ସହାୟତା କରନ୍ତି । ଥରେ ୧୯୪୪ ମସିହାରେ ଉଜ୍ଜୟନୀ ଏବଂ ଦ୍ୱିତୀୟ ଥର ୧୯୫୦ ମସିହାରେ ଏହି ଗ୍ରନ୍ଥ ଲେଖକଙ୍କ ଏଲାହାବାଦ ବାସଗୃହକୁ ରାହୁଳ ଆସିଥିଲେ । ତାପରେ ପର ପର ତିନୋଟି ଗ୍ରୀଷ୍ମଛୁଟିରେ ଏହି ଲେଖକ (ପ୍ରଭାକର ମାଚୱେ) ରାହୁଳଙ୍କ ଅତିଥି ହେଇଥିଲେ ନୈନିତାଲ, ଦାର୍ଜିଲିଂ, କାଲିଂପଙ୍ଗ୍, କୁମାୟୁନ୍ ଓ ମଶୌରୀରେ । ସେଇ ସମୟରୁ ଏହି ଲେଖକ ରାହୁଳଙ୍କ ଘନିଷ୍ଠ ପାରିବାରିକ ବଂଧୁ ହେଇ ପଡ଼ନ୍ତି ।

ରହୁଳଙ୍କର ଥିଲା ରକ୍ତଚାପ । ଅତ୍ୟଧିକ ପରିଶ୍ରମ ଓ ପ୍ରଚୁର ମାନସିକ ଚିନ୍ତା ଫଳରେ

ସେ ଏପରି ଗୁରୁତର ଅସୁସ୍ଥ ହେଇ ପଡ଼ନ୍ତି ଯେ ସେ ଜୀବନର ଶେଷ ଦୁଇ ବର୍ଷ ସ୍ମୃତିଭ୍ରଷ୍ଟ ହେଇ ପଡ଼ନ୍ତି । ସେଇଟା ଥିଲା ଏକ ମର୍ମନ୍ତୁଦ ଦୃଶ୍ୟ । ତାଙ୍କ ପରି ଜଣେ ପଣ୍ଡିତ ଓ ମହା ମନିଷୀ ଶେଷ ପର୍ଯନ୍ତ ନିଜର ନାଁ ମଧ୍ଯ ପଢ଼ି ପାରନ୍ତି ନାହିଁ କି ଠିକ୍ ଭାବେ କଥା ମଧ୍ଯ କହିପାରନ୍ତି ନାହିଁ । କିନ୍ତୁ ତାଙ୍କର ଏହି ବିସ୍ମୃତି ଓ ବ୍ୟକ୍ତିଗତ ଆଘାତର କାରଣ ଜଣା ପଡ଼ିଲା ନାହିଁ । ଯେମିତି 'ନିରାଲା' ତାଙ୍କ ଶେଷ ଜୀବନରେ ଓ କାଜୀ ନଜରୁଲ ତାଙ୍କ ଶେଷ ଜୀବନର ୩୪ବର୍ଷ ଠିକ୍ ଏଇ ଅବସ୍ଥାରେ ଥିଲେ । ଏତେ ବଡ଼ ପଣ୍ଡିତ ଓ ସ୍ରଷ୍ଟାଙ୍କର ସାରା ଜୀବନ ଏତେ ସକ୍ରୀୟ ଗତିଶୀଳତା ପରେ ଏପରି ଅବସ୍ଥା-ବାସ୍ତବିକ ବଡ଼ ଦୁଃଖଦ । ହୁଏତ ସେ ସମାଜରୁ ସେମିତି କିଛି ସ୍ୱୀକୃତି ପାଇଲେନି କିମ୍ବା ଏମିତି ବି ହେଇପାରେ ଯେ ସେ କେବଳ ଉପେକ୍ଷାହିଁ ପାଇଲେ । କିମ୍ବା ଏମିତିବି ହେଇପାରେ ଯେ ସେ କାମ ପରେ ଯୋଉ ବିଶ୍ରାମ ଦରକାର ସେତକ ମଧ୍ଯ ପାଇ ପାରିଲେନି । ଅଧିକ ବୟସରେ ସେ ବିବାହ କରିଥିଲେ କିନ୍ତୁ ହୁଏତ ସନ୍ତାନମାନଙ୍କର ଭବିଷ୍ୟତ ଚିନ୍ତା ତାଙ୍କ ଭିତରେ ଭିତରେ କ୍ଷତ ବିକ୍ଷତ କରିଥିବ। କାରଣ ଶେଷ ଜୀବନ ସମୟରେ ସେ କେବଳ ଅର୍ଦ୍ଧମୂକ ଅବସ୍ଥାରେ ଅସ୍ପଷ୍ଟ ଉଚାରଣ କରୁଥିଲେ 'ଦୋ ବଚ୍ଚା ତିନ ବଚ୍ଚା' । ହେଇପାରେ ତାଙ୍କ ମନ ଓ ଶରୀରର କୌଣସି ସଂଯୋଗ ନ ଥିଲା । କେବଳ ତାଙ୍କ ତୃତୀୟ ପତ୍ନୀ କମଳା ରାହୁଲଙ୍କ ଅନ୍ତିମ ସମୟର ଅବସ୍ଥା ସମ୍ପର୍କରେ ଅଧିକ ପ୍ରମାଣଯୋଗ୍ୟ କଥା ଲେଖିପାରିବେ । ତଥାପି ସେ ସେମିତି ରହସ୍ୟମୟ ହେଇ ରହିଗଲେ ଯେମିତି ସେ ଆଜିବି ଅଛନ୍ତି । ମୃତ୍ୟୁ ପରିହାସ ପ୍ରବଣ ପାଇଲଟ ପରି, ଯେ ଉତ୍ତରକୁ ଅପେକ୍ଷା ରଖି ନଥାଏ ।

ରାହୁଲଙ୍କ ବ୍ୟକ୍ତିବାଦୀ ମଣିଷଟି ଥିଲା ଅତି ଉଦାର ଓ ସ୍ନେହଶୀଳ। ଅତି ସଂଯତ ଓ ଶୃଙ୍ଖଳା ପରାୟଣ ରାହୁଲ ଦିନ ଭିତରେ ଅନ୍ତତଃ ୧୮ ଘଣ୍ଟା କାମ କରୁଥିଲେ । ବ୍ୟକ୍ତିଗତ ଆବଶ୍ୟକତା ଥିଲା ତାଙ୍କର ଅନେକ କମ୍ । ଖାଦ୍ୟପେୟ ଓ ବସ୍ତ୍ରାଦି ଥିଲା ଅତି ସରଳ ଓ ନିରାଡ଼ମ୍ବର । ସେ ତାଙ୍କର ବଂଧୁ ବାନ୍ଧବ ଓ ତରୁଣ ଗବେଷକମାନଙ୍କୁ ଖୁବ୍ ସାହାଯ୍ୟ କରୁଥିଲେ । ଯେମିତି ନିର୍ଭିକ ସେମିତି ସ୍ପଷ୍ଟବାଦୀ । ଜନପ୍ରିୟ ନେତା ବା ମହାନ ବ୍ୟକ୍ତିମାନଙ୍କର ସେ ଥିଲେ କଠୋର ସମାଲୋଚକ । ଯେତେବେଳେ ବିଶ୍ୱାସର ପ୍ରଶ୍ନ ଉଠେ ସେତେବେଳେ ସେ ଅକୃପଣ ସତ୍ୟ ହିଁ ପ୍ରକାଶ କରିଥାଆନ୍ତି । ସେତେବେଳେ ସେ ସାମାନ୍ୟ ମାତ୍ର କୁଣ୍ଠା ପ୍ରକାଶ କରନ୍ତି ନାହିଁ । ତାଙ୍କର ଅବସର ସମୟ ମଧ୍ଯ ଲେଖାପଢ଼ାରେ କଟିଥାଏ । ତାଙ୍କ ଲେଖା ପଢ଼ିଲେ ମନେ ହେବ ସେ ବୋଧେ କଠୋର ସ୍ୱଭାବର ।

ପ୍ରକୃତରେ ସେ ଥିଲେ ସୌମ୍ୟ ଓ ଶାନ୍ତ ସ୍ୱଭାବର ଓ ବହୁତ କମ୍ କଥା କହୁଥିଲେ । ସେଥିପାଇଁ ସେ ଭଲ ଭାଷଣ ଦେଇ ପାରୁ ନଥିଲେ । ୩୪ଟିରୁ ବେଶୀ ଭାଷା ସେ ଜାଣିଥିଲେ । କିନ୍ତୁ ମୁଖ୍ୟତଃ ହିନ୍ଦୀ ଓ ସଂସ୍କୃତକୁ ଲେଖା ଓ କହିବାରେ ବ୍ୟବହାର କରୁଥିଲେ । ସେ ଯେଉଁ ଭାଷା ବ୍ୟବହାର କରନ୍ତୁ ନା କାହିଁକି ତାହା ଥିଲା ସହଜ ଓ ସରଳ । କାରଣ ସେ ସାଧାରଣ ପାଠକଙ୍କ ମାନସିକତାକୁ ଭୁଲିଯାଇ ନଥିଲେ । ତାଙ୍କ ରଚନାରେ କେବେ କେବେ ପ୍ରଚାରକର ମନୋଭାବ ପ୍ରକାଶ ପାଉଥିଲେ ମଧ୍ୟ ବାସ୍ତବରେ ସେ ତା ଠାରୁ ଦୂରରେ ରହିବାକୁ ଚେଷ୍ଟା କରୁଥିଲେ । ରାହୁଳ ଏପରି ଏକ ବ୍ୟକ୍ତି ଥିଲେ ଯେ ସାମାନ୍ୟ ଅବସ୍ଥାରୁ ନିଜେ ନିଜକୁ ଶିକ୍ଷିତ କରାଇଥିଲେ । ଏହିପରି ପ୍ରଗତିଶୀଳ, ବୁଦ୍ଧିବାଦୀ, ଧର୍ମନିରପେକ୍ଷ ଓ ମାନବବାଦୀ ଚରିତ୍ର ବିକାଶର କୃତିତ୍ୱ ଅତି ବିରଳ ।

ବେଳେ ବେଳେ ସେ ଅବଶ୍ୟ ଅଂଧବିଶ୍ୱାସୀ, ରହସ୍ୟବାଦୀ ଓ ଅର୍ଦ୍ଧ ଆଧ୍ୟାତ୍ମବାଦୀମାନଙ୍କୁ ନେଇ ସମାଲୋଚନା କରିଛନ୍ତି, କିନ୍ତୁ ଭାଷା ତାଙ୍କର କେବେ ବି କଠୋର ହେଇନି । ସେ କେବଳ ନିଜକୁ ଦେଖୁ ନଥିଲେ । ପ୍ରତ୍ୟେକ ବସ୍ତୁ ଭିତରେ ଥିବା ଉତ୍ତମ ଉପାଦାନକୁ ମଧ୍ୟ ନିରୀକ୍ଷଣ କରୁଥିଲେ । ଯୋଉ କଥାକୁ ସେ ବୁଝି ପାରୁ ନଥିଲେ କିମ୍ବା ଅଦ୍‌ଭୁତ ଓ ବିଚିତ୍ର ବୋଲି ତାଙ୍କର ମନେ ହେଉଥିଲା ତାକୁ ମଧ୍ୟ ସେ ବୁଝିବାକୁ ଚେଷ୍ଟା କରୁଥିଲେ । ତାଙ୍କ ଅନ୍ତର ଥିଲା ସହାନୁଭୂତିଶୀଳ । କାରଣ ବୁଦ୍ଧଙ୍କ 'କରୁଣା' ତାଙ୍କୁ ପ୍ରଥମରୁ ପ୍ରଭାବିତ କରିଥିଲା । ସେଥିପାଇଁ ତାଙ୍କ ଜୀବନ ମଧ୍ୟ ତାଙ୍କ ପାଠକମାନଙ୍କ ଉପରେ ସ୍ଥାୟୀ ପ୍ରଭାବ ବିସ୍ତାର କରିଥିଲା । ଆମ ଚାରିପାଖରେ ଥିବା ଜଟିଳ ପୃଥିବୀକୁ ମଧ୍ୟ ସେ ବୁଝିବାକୁ ଚେଷ୍ଟା କରୁଥିଲେ । ଏବଂ ସେଥିପାଇଁ ତାଙ୍କ ଆତ୍ମଚେତନା ସମଗ୍ର ମଣିଷ ଭିତରେ ଗୋଟାଏ ନୂଆ ସମନ୍ୱୟ ଓ ସଂହତି ବରାବର ଖୋଜୁଥିଲା ।

ରାହୁଳ ତାଙ୍କ ଜୀବନରେ ବା କୌଣସି ରଚନାରେ କୋଉଠି ସେପରି ରୋମାଣ୍ଟିକ ବା ଭାବବିହ୍ୱଳତାର ପରିଚୟ ଦେଇ ନାହାନ୍ତି । ମଣିଷ ଛୋଟ ହେଉ ବା ବଡ଼ ହେଉ ସେ ସମଧର୍ମୀ କିମ୍ବା ବିରୋଧୀ ହେଲେ ମଧ୍ୟ ମଣିଷ ସଂଗେ ତାଙ୍କର ସମ୍ପର୍କ ଥିଲା ବଂଧୁତ୍ୱପୂର୍ଣ୍ଣ । ମଣିଷ ଭିତରେ ସେ ମଣିଷକୁ ହିଁ ଖୋଜୁଥିଲେ। ସେ ଯେପରି ତୋଷାମଦ ପ୍ରକୃତିର ନଥିଲେ ସେମିତି ବି ସେ ନିନ୍ଦୁକ ନଥିଲେ । 'ତମ୍‌ହାରୀ କ୍ଷୟ' ପୁସ୍ତକରେ ସେ କିଛି ସଂସ୍ଥା ଓ ମୂର୍ତ୍ତୀପୂଜା ବିରୁଦ୍ଧରେ ନିଷେଧ ଜାରୀ କରିଥିଲେ । ରାଜନୈତିକ ସୁଯୋଗ ବା ସୁବିଧାବାଦୀମାନଙ୍କର ବାରମ୍ବାର ମତ ପରିବର୍ତ୍ତନକୁ (ଯେମିତି ତାଙ୍କର ଭୋଜପୁରୀ

ନାଟକ 'ଧୂନ୍‌ମୁନ୍‌') ନେଇ ବେଶ୍ ବ୍ୟଙ୍ଗ ସୃଷ୍ଟି କରିଛନ୍ତି । ପୁଣି ପୁରୁଷର ସ୍ତ୍ରୀ ଶାସନକୁ ମଧ୍ୟ ପରିହାସ କରିଛନ୍ତି । ତଥାକଥିତ ଧର୍ମଗୁରୁମାନଙ୍କ ଭଣ୍ଡାମୀକୁ ମଧ୍ୟ ତାଙ୍କ ବହୁ ରଚନାରେ ତୀବ୍ର ସମାଲୋଚନା କରି ସେମାନଙ୍କ ମୁଖା ଖୋଲି ଦେଇଛନ୍ତି । ତଥାପି ରାହୁଲଙ୍କ ପ୍ରତିଭାର ଦୀପ୍ତି, ତାଙ୍କ କରୁଣା ଓ ମୈତ୍ରୀର ପ୍ରଭାବ ସବୁଠି ବିଛାଡ଼ି ହୋଇ ପଡ଼ିଛି । ତାକୁ ସେ ତାଙ୍କି ରଖିବାକୁ ଚାହିଁଥିଲେ ମଧ୍ୟ ସେ ପାରି ନାହାନ୍ତି ।



# ରଚନା ପଞ୍ଜୀ

ରାହୁଲଙ୍କର ସମଗ୍ର ରଚନାର ଗୋଟାଏ ସୂଚୀ ଯଦି ଏଠାରେ ତିଆରି କରାଯାଏ ତେବେ ଏଇ ଛୋଟ ପୁସ୍ତକଟିର ପୃଷ୍ଠା ସଂଖ୍ୟା ଅନେକ ବଢ଼ିଯିବ । ତେଣୁ ଏଠାରେ ତାଙ୍କ ସାହିତ୍ୟର ଅବଦାନ ବିଷୟରେ ଆଲୋଚନା କରିବା ଉଚିତ ହେବ ଯାହା ଦ୍ୱାରା ତାଙ୍କ ରଚନାର କୃତିତ୍ୱ ଜଣା ପଡ଼ିବ, ଏବଂ ତାଙ୍କର ଏଇ ସବୁ ବହିର ନାମୋଲ୍ଲେଖ କରାଯିବ ଯାହାର ବିଷୟ ସବୁ ହେବ ଦର୍ଶନ, ଇତିହାସ, ସମାଜ ବିଜ୍ଞାନ ଓ ସଂସ୍କୃତ ଇତ୍ୟାଦି । ୧୯୨୭ ମସିହା ଅର୍ଥାତ୍ ୩୪ ବର୍ଷ ବୟସରୁ ସେ ଲେଖା ଆରମ୍ଭ କଲେ ଏବଂ ୧୯୬୧ ମସିହା ପର୍ଯ୍ୟନ୍ତ ତାହା ନିରବଚ୍ଛିନ୍ନ ଭାବେ ଚାଲୁଥିଲା । ଏପରିକି ଅସୁସ୍ଥତା ସମୟରେ ମଧ ବାଦ୍ ପଡ଼ିନାହିଁ । ପ୍ରକାଶ ଚନ୍ଦ୍ର ଗୁପ୍ତ ଗୋଟିଏ ଜାଗାରେ ଲେଖିଛନ୍ତି "ସେ ତାଙ୍କ ଲେଖନୀ ଚାଳନା ଠିକ୍ ଘଡ଼ି ପରି କରୁଥିଲେ । ସର୍ବମୋଟ୍ ୩୪ ବର୍ଷର ରଚନା କାଳ ମଧ୍ୟରେ ତାଙ୍କ ସାହିତ୍ୟ ସୃଷ୍ଟିର ମୋଟ୍ ପୃଷ୍ଠା ସଂଖ୍ୟା ୫୦ ହଜାର । ତା ଛଡ଼ା ଏଯାବତ୍ ତାଙ୍କର ୧୨ଟି ପାଣ୍ଡୁଲିପି ଅପ୍ରକାଶିତ ରହିଛି । ବହୁ ଦେଶ ବିଦେଶରେ ଦୁଃସାହସିକ ଓ ବିପଜ୍ଜନକ ଯାତ୍ରା, କାରାବାସ ଇତ୍ୟାଦି ପରେ ମଧ ସେ ଯାହା ସୃଷ୍ଟି କରିଯାଇଛନ୍ତି ତାହା ବାସ୍ତବିକ ବିସ୍ମୟକର । ତାଙ୍କ ପରି ଜଣେ ସଦା ଭ୍ରାମ୍ୟମାଣ ବ୍ୟକ୍ତିଙ୍କ ପକ୍ଷରେ ଏତେ ପ୍ରଚୁର ପରିମାଣରେ ରଚନା କମ୍ ବିସ୍ମୟକର ନୁହେଁ । ଯେ କୌଣସି ବିଷୟରେ ସେ ଅତି ଚମତ୍କାର ଭାବେ ଲେଖି ପାରୁଥିଲେ । ଏପରିକି ଲେଖା ପାଇଁ ସେ ବିଶେଷ ମାନସିକ ପ୍ରସ୍ତୁତି ପାଇଁ ଅପେକ୍ଷା କରୁ ନଥିଲେ । ଟ୍ରେନ୍, ଜାହାଜ, ଧର୍ମଶାଳା ଏପରିକି ତମ୍ବୁ, ହୋଟେଲ କିମ୍ବା ଘର ବିଦେଶରେ ଯେଉଁଠି ଯେପରି ଅବସ୍ଥାରେ ଥିଲେ ମଧ ସେ ନିରନ୍ତର ଲେଖି ଯାଇଛନ୍ତି ।

# ଉପନ୍ୟାସ ଓ ଗଳ୍ପ

ଗଳ୍ପ ଓ ଉପନ୍ୟାସ ମିଶି ରାହୁଲ ମୋଟ ୧୩ ଖଣ୍ଡି ବହି ଲେଖିଛନ୍ତି । ତା ଭିତରେ ପ୍ରସିଦ୍ଧି ଲାଭ କରିଥିବା ବହିଗୁଡ଼ିକ ହେଲା : "ସିଂହ ସେନାପତି", "ଜୟ ଯୌଧେୟ" ("ବିଶାଳ ଭାରତ" ପତ୍ରିକାରେ ଏହି ଲେଖକ (ପ୍ରଭାକର ମାଚୱେ) ବହିଗୁଡିକ ଉପରେ ଆଲୋଚନା କରନ୍ତି ୧୯୩୮ରେ) "ବିସ୍ମୃତ ଯାତ୍ରୀ", " ଦିବୋଦାସ", ଓ "ମଧୁର ସ୍ୱପ୍ନ" । ପ୍ରଥମ ତିନୋଟି ଉପନ୍ୟାସ ପ୍ରାଚୀନ ଓ ମଧ୍ୟଯୁଗର ଭାରତବର୍ଷର ଇତିହାସ ବିଷୟରେ । 'ଦିବୋଦାସ' ବୈଦିକ ଆର୍ଯ୍ୟର ଜୀବନଯାତ୍ରା ଅବଲମ୍ବନରେ ଏକ କଳ୍ପନାମୂଳକ କାହାଣୀ । ଏହି ଗ୍ରନ୍ଥର ବିଷୟ ପାରସ୍ୟର ପ୍ରାଚୀନ ଇତିହାସ । ରାହୁଲ ସାମଜିକ ଉପନ୍ୟାସ ମାତ୍ର ଦୁଇ ଖଣ୍ଡ ଲେଖିଥିଲେ । "ଜୀବନ କେ ଲିୟେ" ଓ "ରାଜସ୍ଥାନୀ ରାଣୀବାସା" । "ଜୀବନ କେ ଲିଏ" ଉପନ୍ୟାସଟି ୧୯୧୪ ମସିହାରେ ପ୍ରଥମ ମହାଯୁଦ୍ଧରେ ଯୋଗ ଦେଇଥିବା ଜଣେ ସୈନିକର କୃଷକ ହେଇଥିବା ସଂଗ୍ରାମୀ ମଣିଷର ଘରକୁ ଫେରି ଜମିଦାରୀ, ସାମନ୍ତବାଦ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ଯୋଉ ସଂଗ୍ରାମୀ ଆନ୍ଦୋଳନ ଆରମ୍ଭ କରିଥିଲେ ତାର ଇତିହାସ । ଏଥିରେ ୧୯୩୯ ମସିହା ପର୍ଯ୍ୟନ୍ତ ସାମାଜିକ ଚିନ୍ତା ମିଳିଥାଏ । "ରାଜସ୍ଥାନୀ ରାଣୀବାସ" ଉପନ୍ୟାସଟି ରାଜସ୍ଥାନର ରାଣୀହଂସପୁରରେ ବାସ କରୁଥିବା 'ହାରେମ' ଓ ଦାସୀମାନଙ୍କ ଉପରେ ହେଉଥିବା ଅତ୍ୟାଚରର ଏକ ଅନନ୍ୟ କାହାଣୀ । ତାଙ୍କର ଆଉ ଦୁଇଟି ସାମାଜିକ ରଚନା, ଯେମିତିକି 'ବାଇଶବୀ ସଦୀ'ରେ ଆଦର୍ଶ ରାଜ୍ୟର ବର୍ଣ୍ଣନା ଏବଂ ଦ୍ୱିତୀୟଟି ବ୍ୟବହାରୀକ ଭାଷାରେ ଏବଂ ସାମ୍ବାଦିକ ଶୈଳୀରେ ଲେଖା 'ଭାଗୋ ନହିଁ, ଦୁନିଆ କୋ ବଦଲୋ' ଗ୍ରନ୍ଥ । ତାଙ୍କର ଚାରୋଟି ଗଳ୍ପ ସଂଗ୍ରହ

ମଧ୍ୟରୁ 'ସତମୀ କେ ବାଚ୍ଚେ' କାହାଣୀଟି ଗୋଟିଏ ଶିଶୁର ମର୍ମାନ୍ତିକ ଘଟଣା । ଦାରିଦ୍ର୍ୟ ଭିତରେ ନିଷ୍ପେସିତ ମଣିଷର ଜୀବନ ଓ ସାମାଜିକ ରୀତିନୀତିର ସ୍ଥିତାବସ୍ଥା ବିରୁଦ୍ଧରେ ସଂଗ୍ରାମର ଗୋଟାଏ ନିଖୁଣ ଚିତ୍ର ଯାହା ସେ ନିଜ ମାଟିରୁ ତୋଳି ଆଣି ଆଙ୍କିଚନ୍ତି । ସେଥିରେ ସେ ଗର୍କୀଙ୍କ ପରି ସଫଳତା ମଧ୍ୟ ପାଇଚନ୍ତି ଅତି ବାସ୍ତବବାଦୀ ଚିତ୍ର ଅଙ୍କନ କରି । ଗର୍କୀ ଲେନିନ୍‌ଙ୍କୁ ଲେଖିଥିଲେ "ଖଣ୍ଡେ ଭଲ ବହି ଗୋଟାଏ ଖରାପ ମଣିଷକୁ ଭଲ କରେ ।" ଏହି ପୁସ୍ତକରେ ଗୋଟାଏ ଐତିହାସୀକ କାହାଣୀ ମଧ୍ୟ ଅଛି ଯାହାର ନାମ 'ସ୍ମୃତି ଜ୍ଞାନ କୀର୍ତ୍ତି' । ତାଙ୍କର 'ବହୁ ରଙ୍ଗୀ ମଧୁପୁରୀ' ବହିରେ ଗ୍ରନ୍ଥ ବିଳାସୀ ମସୌରୀର ୨୧ଟି ଚିତ୍ର ସେ ଆଙ୍କିଚନ୍ତି । ତା ଭିତରୁ ନଅଟି ନିର୍ବାଚିତ ଗଳ୍ପ 'ରୂପୀ' ନାମକ ସଂଗ୍ରହରେ ସ୍ଥାନ ପାଇଚି । ତାର 'କନେଲା କୀ କଥା'ର କଥା ଶବ୍ଦଟି ତାତ୍ପର୍ଯ୍ୟହୀନ ବୋଲି ମନେହୁଏ । ତାର କଥାବସ୍ତୁ ଖ୍ରୀଷ୍ଟପୂର୍ବ ୧୩୦୦ରୁ ୧୯୫୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସମୟ ଭିତରେ ଉନ୍ନତ ଜୀବନର ୯ଟି ଗଳ୍ପ ରହିଚି । ଏହି ଗ୍ରନ୍ଥର ବଂଗଳା ଅନୁବାଦ 'ଭଲଗାରୁ ଗଙ୍ଗା', ଦ୍ୱିତୀୟ ଖଣ୍ଡ । (ଏହା ଓଡ଼ିଆରେ ମଧ୍ୟ ଅନୁଦିତ) ତାଙ୍କର ଓଡ଼ିଆରେ ଏହି ଖଣ୍ଡିଏ ମାତ୍ର ବହି ଅନୁଦିତ ହୋଇଥିବାର ଜଣାଯାଏ ।

ଏହି ଖଣ୍ଡିକ ତାଙ୍କର ସବୁଠାରୁ ଉଲ୍ଲେଖଯୋଗ୍ୟ ଗଳ୍ପ ସଂଗ୍ରହ ଯୋଉଥିରେ ରାହୁଳଙ୍କୁ ସବୁଠାରୁ ବେଶୀ ସଫଳତା ମିଳିଚି । ପ୍ରାକ୍ ବୈଦିକ କାଳ ଠାରୁ ୧୯୪୪ ମସିହା ପର୍ଯ୍ୟନ୍ତ ଆଧୁନିକ ଭାରତବର୍ଷ ବିଷୟକୁ ନେଇ ୨୦ଟି ଗଳ୍ପ ଏଥିରେ ଅଛି । ୧୪ଟି ଗଳ୍ପ ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତର । ପଞ୍ଚଦଶ ଶତାବ୍ଦୀ ଠାରୁ ଗଳ୍ପର ବିଷୟ ମୁସଲମାନ ଓ ବ୍ରିଟିଶ ସାମ୍ରାଜ୍ୟର ପଟ୍ଟଭୂମି ଉପରେ ଲିଖିତ । ରାହୁଳ ଇତିହାସର ଗୋଟିଏ ବିଶେଷ ସମୟକୁ ନେଇ ସେଥିରେ ବିଶେଷ ଘଟଣାକୁ ଏହି ଗ୍ରନ୍ଥରେ ସଂଯୋଜିତ କରିଛନ୍ତି । କେତେବେଳେ କାଳିଦାସଙ୍କୁ ରାହୁଳ ଜଣେ ସାମନ୍ତବାଦୀ ରାଜକବି ବୋଲି ପ୍ରମାଣ କରିବା ପାଇଁ କିମ୍ବା ହିନ୍ଦୁ ମୁସଲମାନ ଐକ୍ୟର କୃତ୍ରିମତାକୁ ବୁଝାଇବା ପାଇଁ ଏହି ଗ୍ରନ୍ଥରେ ସେ ତାଙ୍କର ସୁନିପୁଣ ଓ ବସ୍ତୁନିଷ୍ଠ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି । ସର୍ବୋପରି ଏ ପୁସ୍ତକର ରଚନା ଓ କଳ୍ପନା ଉଭୟ ସମଗ୍ର ଭାରତୀୟ ସାହିତ୍ୟକୁ ହିନ୍ଦୀ ଭାଷାର ଏକ ବିଶେଷ ଅବଦାନ ।



# ଆତ୍ମଜୀବନୀ ଓ ଜୀବନୀମୂଳକ ରଚନା

ରାହୁଲଙ୍କ ଗଦ୍ୟ ସାହିତ୍ୟର ଗୋଟିଏ ବଡ଼ ଅଂଶ ପାଞ୍ଚଖଣ୍ଡରେ ପ୍ରକାଶିତ ତାଙ୍କ ଆତ୍ମକଥା । ତାଙ୍କ ଆତ୍ମଜୀବନୀ ୧୮୧୪ ପୃଷ୍ଠାରେ ସରିଛି । ସ୍ୱର୍ଗତ ଶିବଚନ୍ଦ୍ର ଶର୍ମା ଲେଖିଛନ୍ତି "ଏହି ଗ୍ରନ୍ଥ ଭାରତରେ ଓ ଭାରତ ବାହାରେ ବ୍ୟକ୍ତିଗତ ଭାବରେ ବା ସମଷ୍ଟିଗତ ଭାବରେ ସଂଗଠିତ ରାଜନୈତିକ, ସାହିତ୍ୟିକ ଏବଂ ସମାଜିକ କର୍ମକାଣ୍ଡର ଗୋଟିଏ ବିରାଟ କୋଷ । ଏଥିରେ ରାହୁଲଙ୍କ ବିଷୟ କମ୍, ଅନ୍ୟ ବିଷୟ ବେଶୀ ।"

ଆଉ ଚାରିଟି ଗ୍ରନ୍ଥରେ ତାଙ୍କ ଆତ୍ମକଥାର ଭାଗ ବେଶୀ । 'ବଚ୍‌ପନକୀ ସ୍ମୃତିୟା', ଅତୀତ ସେ ବର୍ତ୍ତମାନ'ରେ ମଧ୍ୟ ତାଙ୍କ ଆତ୍ମକଥା ଏବଂ ଯେଉଁସବୁ ମହାନ୍ ବ୍ୟକ୍ତିତ୍ୱଙ୍କ ସଂସ୍ପର୍ଶରେ ସେ ଆସିଥିଲେ ସେମାନଙ୍କ କଥା ସେଥିରେ ଉଲ୍ଲେଖ ଅଛି । 'ମେରେ ଅସହଯୋଗ କେ ସାଥୀ' ଓ 'ଜୀନକା ମ୍ୟାଁୟ କୃତଜ୍ଞ' ପୁସ୍ତକରେ ମଧ୍ୟ ପଞ୍ଚାବନ ଜଣ ମନିଷୀଙ୍କୁ ତାଙ୍କର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି ।

ଐତିହାସିକ କ୍ରମାନୁସାରେ ସେ ଯେଉଁ ଜୀବନୀଗୁଡ଼ିକ ଲେଖିଛନ୍ତି ସେଗୁଡ଼ିକ ହେଲା 'ମହାମାନବ ବୁଦ୍ଧ', 'ସିଂହଳକେ ବୀର ପୁରୁଷ', (ସାତଜଣ ମହାପୁରଷଙ୍କ ଜୀବନୀ ଅବଲମ୍ବନରେ), ସିଂହଳ ଘୁମକ୍କଡ଼ ଜୟବର୍ଦ୍ଧନ, ସର୍ଦ୍ଦାର ପୃଥ୍ୱିସିଂହ, ଘୁମକ୍କଡ଼ ସ୍ୱାମୀ (ହରିଶରଣା ନନ୍ଦ), ବୀର ଚନ୍ଦ୍ର ସିଂହ ଗଡ଼ୱାଲୀ, 'କପ୍ତାନ ଲାଲ' (ଯଶବନ୍ତ ଚନ୍ଦ୍ର) । ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଜୀବନୀମୂଳକ ଗ୍ରନ୍ଥ 'ନୟେ ଭାରତ କେ ନୟେ ନେତା' ଦୁଇ ଖଣ୍ଡରେ ସମ୍ପୂର୍ଣ୍ଣ; । ଏଥିରେ ଶେର୍ ଇ କାଶ୍ମୀର ଶେଖ୍ ଅବଦୁଲ୍ଲା, କମରେଡ଼୍ ୟୁସୁଫ, ଭରଦ୍ୱାଜ, ଏସ୍.ଜୀ. ସରଦେଶାଇ, ସ୍ୱାମୀ ସହଜାନନ୍ଦ, ଏସ୍. ଏ. ଡାଙ୍ଗେ, କଳ୍ପନା ଦତ୍ତ

ଯୋଶୀ, ବଂକିମ ମୁଖାର୍ଜୀ, ପି. ସୁନ୍ଦାରାୟା, କେ. କେରଲିଅନ, ଆର୍.ବି.ମୋରେ, ଡ଼କ୍ଟର ଗଙ୍ଗାଧର ଅଧିକାରୀ, ଡ଼ା. କେ.ଏମ୍.ଆସରାଫ, ପୁରବଚାନ୍ଦ ଯୋଶୀ, ଏସ୍.ଏସ୍. ବଟଲିଓ୍ୱାଲା, ମୁହମ୍ମଦ ଶହୀଦ, ମୟଦ ଜମାଲୁଦ୍ଦୀନ ବୁଖାରୀ, ଫଜଲ ଇଲାହୀ କୁର୍‌ବାନ୍, ଗବାରକ ସାମୁର, ଡ଼. ଜେଡ୍.ଏ.ଅହମ୍ମଦ, ମହମ୍ମଦ ଜୁଫରୀ ନିରାଲା, ପନ୍ତ ଇତ୍ୟାଦି । ସେ ପ୍ରତ୍ୟେକଙ୍କ ସହିତ ସାକ୍ଷାତ କରି ତାଙ୍କ ପାରିବାରିକ ବଂଶ ପରିଚୟ, ଶୈଶବ, କର୍ମ ଜୀବନ ସଂଗହ କରି ତାର ସାମାଜିକ ଓ ରାଜନୈତିକ ସଂଘର୍ଷମୟ ଘଟଣାର ବିଶଦ ବିବରଣୀ ଅତି ନିଖୁଣ ଭାବେ ଉଲ୍ଲେଖ କରିଛନ୍ତି । ଭାରତର ସମାଜବାଦୀ ଓ ସାମ୍ୟବାଦୀ ପରିସ୍ଥିତିର ଗବେଷକମାନଙ୍କ ପାଇଁ ଏ ବହିଟି ସାହାଯ୍ୟକାରୀ ଭାବରେ କାମ କରିବ । କିନ୍ତୁ ଦୁର୍ଭାଗ୍ୟ ଏହି ଯେ ବହୁଦିନ ହେଲା ବହିଟି ବଜାରରେ ମିଳୁନାହିଁ - ତାର ପୁନଃମୁଦ୍ରଣ ହୋଇନି ।

ରାହୁଲ ହିନ୍ଦୀରେ ପ୍ରଥମେ ଚାରିଖଣ୍ଡ ଜୀବନୀ ଲେଖିଛନ୍ତି । ସେଗୁଡ଼ିକ ହେଲା କାର୍ଲମାର୍କ୍ସ, ଲେନିନ, ଷ୍ଟାଲିନ ଓ ମାଓ ସେତୁଂଙ୍କର । ୧୯୫୬ ମସିହାରେ ରଚିତ ୩୫୭ ପୃଷ୍ଠାର ପୁସ୍ତକ 'ମାଓ ସେତୁଂ'ର ଭୂମିକାରେ ରାହୁଲ ଲେଖିଛନ୍ତି, 'ମାଓ ଏସିଆର ମଣିଷ ଏବଂ ଏସିଆରେ ଚୀନ୍ ସହିତ ଭାରତର ସମ୍ପର୍କ ବିଶେଷ କରି ସାଂସ୍କୃତିକ ଆଦାନ ପ୍ରଦାନର ଘନିଷ୍ଠତା ଅନେକ ପୁରୁଣା । ଏହି ଦୁଇଟି ଦେଶର ଜୀବନ ଧାରାରେ ବହୁ ପ୍ରାଚୀନ କାଳରୁ ଗୋଟିଏ ନିବିଡ଼ ସମ୍ପର୍କ ବହୁ ଦିନୁ ରହିଆସିଛି । ଯଦିଓ ମାର୍କ୍ସବାଦର ପ୍ରୟୋଗ ବିଭିନ୍ନ ଦେଶରେ ବିଭିନ୍ନ ପରିସ୍ଥିତିରେ ହେଇ ଆସିଛି ତେବେ ମୁସ୍କିଲ ହେଉଛି ନିଜ ଦେଶରେ ମାର୍କ୍ସବାଦର ପ୍ରୟୋଗ ପାଇଁ ମାର୍କ୍ସ, ଏଞ୍ଜେଲସ୍, ଲେନିନ୍, ଷ୍ଟାଲିନ୍ ଏବଂ ମାଓ ସେ ତୁଂ ପରି ପ୍ରତିଭାର ଆବଶ୍ୟକତା ରହିଛି । ପ୍ରତ୍ୟେକ ଦେଶରେ ବିପ୍ଳବ ଓ ନବ ନିର୍ମାଣ ପାଇଁ ପ୍ରଚୁର ଶକ୍ତି ରହିଛି, ହୁଏତ ତାର କେତେବେଳେ କେତେବେଳେ ବିକାଶ ଘଟିଥାଏ । କିନ୍ତୁ ସଫଳ ବିପ୍ଳବ ପାଇଁ ଏଇ ସବୁ ମହାନ ବ୍ୟକ୍ତିତ୍ୱର ଆବଶ୍ୟକତା ରହିଛି । ଆବଶ୍ୟକ ହେଲେ ପ୍ରତିଭାର ଅଭାବ ରହିବ ନାହିଁ । ଆମ ଦେଶ ପାଇଁ ମାଓଙ୍କ ଜୀବନୀ ଅତ୍ୟନ୍ତ ଆବଶ୍ୟକ । (ମାଓ ସେ ତୁଂ, ଭୂମିକା (୧୬.୦୭.୫୬), କିତାବ ମହଲ, ଏଲାହାବାଦ, ୧୯୭୧) ।

ଏହି ଉଦାହରଣରୁ ସ୍ପଷ୍ଟ ହେଇ ଯାଇଛି ଯେ ରାହୁଲ ମନ ପ୍ରାଣରେ ମାର୍କ୍ସବାଦୀ ଥିଲେ । ସେ କେବେବି ନିଜ ସ୍ୱାର୍ଥ ପାଇଁ ଅନ୍ୟକୁ ସନ୍ତୁଷ୍ଟ କରିବାର ଇଚ୍ଛାନେଇ କଲମ

ଧରି ନଥିଲେ । ବସ୍ତୁତଃ ରାହୁଲ ମାର୍କ୍ସବାଦ ବା ସମାଜବାଦକୁ ଶ୍ରଦ୍ଧା କରିବାକୁ ଶିଖିଥିଲେ ନିଜ ଜୀବନର ଅଭିଜ୍ଞତାରୁ । କୌଣସି ବହି ପଢ଼ି ନୁହେଁ । କେବଳ ଆରାମ ଚେଆରରେ ବସି ବା ସୁସଜ୍ଜିତ ବୈଠକଖାନାରେ (ଡ୍ରଇଂରୁମ୍) ତକିଆରେ ଆଉଜି ବସି ନିଜ ବିଦ୍ୟା ବୁଦ୍ଧି ବାହାର କରିବାର ଲେଖକ ଥିଲେ ରାହୁଲ ।

ତାଙ୍କର ସର୍ଜନାତ୍ମକ ସାହିତ୍ୟର ଗୋଟାଏ ବଡ଼ ଅଂଶ ତାଙ୍କର ପ୍ରବାସ ଯାତ୍ରାର ବର୍ଣ୍ଣନା । ଏ ବିଷୟରେ ତାଙ୍କର ଢେର ଖଣ୍ଡି ବହି ଅଛି ।

୧. ମେରୀ ଲଦ୍ଦାକ ଯାତ୍ରା : ଏଥିରେ ମିରଟରୁ ପଞ୍ଜାବ, ସୁଲ୍‌ତାନ, ଡେରାଗାଜୀଖାଁ, ସିମାନ୍ତ, ପୁନଛରୀଯାତ୍, କାଶ୍ମୀର, ଜୋଜିଲା ଗିରିଦ୍ୱାର ଦେଇ ଲାଦ୍ଦାକ ପର୍ଯ୍ୟନ୍ତ ଯାତ୍ରାର ବର୍ଣ୍ଣନା । ଏଥିରେ ଲାହୋର ଓ କୁଲୁର ବର୍ଣ୍ଣନା ମଧ୍ୟ ଅଛି । ବହିଟି ସେ ଲେଖିଥିଲେ ୧୯୩୯ ମସିହାରେ ।

୨. ଲଂକା : ଏଥିରେ ଅନୁରାଧାପୁର, ପୋଲୁନାମ୍ବୁରୁ ଓ କଲମ୍ବୋର ଇତିହାସର ବର୍ଣ୍ଣନା ରହିଛି ।

୩. ମେରୀ ୟୁରୋପ ଯାତ୍ରା : ୧୯୩୫ ମସିହାରେ ପ୍ରକାଶିତ ଏହି ପୁସ୍ତକରେ ଭଦନ୍ତ ଆନନ୍ଦ କୌଶଲ୍ୟାୟନଙ୍କ ସାଥିରେ କଲମ୍ବୋରୁ ଲଣ୍ଡନ, ପ୍ୟାରିସ ଓ ଜର୍ମାନୀ ପର୍ଯ୍ୟନ୍ତ ୧୯୩୨ ମସିହାରେ ଭ୍ରମଣ ବୃତ୍ତାନ୍ତ ସବୁ ରହିଛି ।

୪. ମେରୀ ତିବ୍‌ବତ ଯାତ୍ରା : ୧୯୩୭ରେ ପ୍ରକାଶିତ ଲାସା, ଚଙ୍ଗ, ଶାକ୍ୟ, ଙ୍କେନାମ ଏବଂ ନେପାଳର ଡାଏରୀର କିଛି ଅଂଶ ଏଥିରେ ଅଛି ।

୫. ଯାତ୍ରାକେ ପନ୍ନେ : ୧୯୪୬ରେ ପ୍ରକାଶିତ । ତିବ୍‌ବତ ତୃତୀୟ ଥର ଯାତ୍ରା । ରାଜସ୍ଥାନ ଯାତ୍ରାର କିଛି ଅଂଶ ଏବଂ ଭଦନ୍ତ ଆନନ୍ଦ କୌଶଲ୍ୟାୟନଙ୍କୁ ଲେଖା ଚିଠି ମଧ୍ୟ ଏଥିରେ ଅଛି ।

୬. ଜାପାନ – ସିଂଗାପୁର, ହଂକଂ, ସାଂହାଇ, କୋବେ, ଟୋକିଓ, କୋୟାସାନ ପ୍ରଭୃତି ଯାତ୍ରାର କାହାଣୀ ।

୭. ଇରାନ : (ଦୁଇଖଣ୍ଡ) ପ୍ରଥମ ଖଣ୍ଡରେ ପୁରୁଣା ପାରସ୍ୟର ଇତିହାସ ଓ ଦ୍ୱିତୀୟ ଖଣ୍ଡରେ ଆଧୁନିକ ଇରାନ ଯାତ୍ରାର ବର୍ଣ୍ଣନା ଅଛି । ସୋଭିଏତ ଋଷିଆର ବାକୁଠାରୁ ଫେରିବା ସମୟରେ ରାହୁଲ ତେହେରାନ, ଇସ୍ପାହାନ ଓ ସିରାଜ ସହରକୁ ଯାଇଥିଲେ ।

୮. ରଷ୍‌ମେ ପଚିଶ ମାସ : ୧୯୫୨ରେ ପ୍ରଥମ ପ୍ରକାଶ ବିକାନୀରରୁ ଦ୍ୱିତୀୟ ଥର ୧୯୬୭ରେ 'ମେରୀ ଜୀବନ ଯାତ୍ରା'ର ତୃତୀୟ ଖଣ୍ଡରେ ପୁନର୍ମୁଦ୍ରିତ ।

୯. କିନ୍ନର ଦେଶ ମେ : ୧୯୪୮ରେ ପ୍ରୟାଗରୁ ପ୍ରକାଶିତ । ୨ୟ ସଂସ୍କରଣ ପ୍ରକାଶିତ ହୁଏ ୧୯୫୬ରେ ଏଲାହାବାଦରୁ । ହିମାଚଳ ପ୍ରଦେଶର କିନ୍ନର ଦେଶର ଭ୍ରମଣ କାହାଣୀ ରହିଛି ।

୧୦. ତିବ୍‌ବତ ମେ ସଉଆ ବର୍ଷ : ଦିଲ୍ଲୀରୁ ୧୯୩୩ରେ ପ୍ରଥମ ପ୍ରକାଶିତ । 'ରାହୁଲ ଯାତ୍ରାବଳୀ' ବହିର ପ୍ରଥମ ଖଣ୍ଡରେ ପୁନର୍ମୁଦ୍ରିତ ।

୧୧. ଘୁମକ୍କଡ଼ - ଶାସ୍ତ୍ର - ଏହି କ୍ଷୁଦ୍ର ପୁସ୍ତକଟି ଭ୍ରମଣ କରୀମାନଙ୍କ ଉଦ୍ଦେଶ୍ୟରେ ଲିଖିତ । କିନ୍ତୁ ବେଶ ଉପାଦେୟ ।

୧୨. ଏସିଆକେ ଦୁର୍ଗମ ଭୂଖଣ୍ଡ ମେ - ଦ୍ୱିତୀୟ ଥର ତିବ୍‌ବତ ଭ୍ରମଣର ବର୍ଣ୍ଣନା ।

୧୩. ଚୀନ୍ ମେ କ୍ୟା ଦେଖା - ୧୯୫୮ ମସିହାରେ ନୂତନ ଚୀନ ଯାତ୍ରାର ଉତ୍ସାହ ପୂର୍ଣ୍ଣ ବର୍ଣ୍ଣନା ।

ଏହା ଛଡ଼ା ହିମାଳୟ ସମ୍ପର୍କରେ ସେ ଏକ ପୁସ୍ତକମାଳା ରଚନା କରିଛନ୍ତି ଯୋଉଥିରେ ଦାର୍ଜିଲିଂ, କୁମାୟୁନ୍, ଗଡ଼ୱାଲ, ଜୌନସାର, ନେପାଳ, ହିମାଚଳ ପ୍ରଦେଶର ପୃଥକ ପୃଥକ ବର୍ଣ୍ଣନା ରହିଛି । ତାଙ୍କର ଅନ୍ୟ ଦୁଇଖଣ୍ଡି ଗ୍ରନ୍ଥ 'ସୋଭିୟେତ ମଧ୍ୟ ଦେଶ' ଓ 'ସେଭିୟେତ ଭୂମି'ରେ ମଧ୍ୟ ଜ୍ଞାତବ୍ୟ ବିଷୟ ପ୍ରଚୁର ରହିଛି ।

ତାଙ୍କର ସାହିତ୍ୟିକ ଗୁଣାବଳୀ ଥିବା ଅନ୍ୟ ପୁସ୍ତକରେ ଇତିହାସ ବିଷୟରେ ମଧ୍ୟ ରହିଛି । 'ମଧ୍ୟ ଏସିଆକା ଇତିହାସ' ଦୁଇ ଖଣ୍ଡରେ ପ୍ରକାଶିତ କିନ୍ତୁ ବେଶ୍ ବଡ଼ ପୁସ୍ତକ । ଏହା ସାହିତ୍ୟ ଏକାଡ଼େମୀ ପୁରସ୍କାର ମଧ୍ୟ ପାଇଛି ବୋଲି ଅଗରୁ କୁହାଯାଇଛି । ଇତିହାସ ବିଷୟରେ ତାଙ୍କର ଅନ୍ୟାନ୍ୟ ଗ୍ରନ୍ଥଗୁଡ଼ିକ 'ଋଗ୍ ବୈଦିକ ଆର୍ଯ୍ୟ', 'ଆକବର', ଓ 'ଫାଉଣ୍ଡର୍ସ ଅଫ୍ ବ୍ରିଟିଶ୍ ରୁଲ୍ ଇନ୍ ଇଣ୍ଡିଆ'ର ଅନୁବାଦ । ତେବେ ଏହି ପୁସ୍ତକଗୁଡ଼ିକୁ ଠିକ୍ ଭାବରେ ମୌଳିକ ବୋଲି କୁହାଯାଇ ପାରିବନି । କିନ୍ତୁ ରାହୁଳଙ୍କ 'ପୂରାତନ ପ୍ରବନ୍ଧାବଳୀ'ରେ ତାଙ୍କର ଗବେଷଣାମୂଳକ ମୌଳିକ ପ୍ରବଂଧଗୁଡ଼ିକ ଦେଖିବାକୁ ମିଳେ ।

ହିନ୍ଦୀ ସାହିତ୍ୟର ପ୍ରାଥମିକ ଇତିହାସକୁ ରାହୁଳ ନୂତନ ଭାବେ ପ୍ରକାଶ କରିଛନ୍ତି - ସଂସ୍କୃତ ଓ ପାଲିଭାଷାର ଦୁଇଟି କାବ୍ୟ ସଂଗ୍ରହ ସଂକଳିତ କରି । (ପାଲୀ କାବ୍ୟ ସଂଗ୍ରହ ତାଙ୍କର ଏବେ ମଧ୍ୟ ଅପ୍ରକାଶିତ) ।

ରାହୁଲ ତାଙ୍କ ଜୀବନର ଶେଷ ଆଡ଼କୁ ଏପରି ଗୋଟିଏ କାବ୍ୟ ସଂଗ୍ରହ ପ୍ରସ୍ତୁତ କରିଥିଲେ ଯାହା ପୁରୁଣା ହେଲେ ମଧ୍ୟ ନୂଆ । ଏବଂ ତାକୁ ପାଠ କରି ଏବର ପାଠକ ନିଶ୍ଚୟ ଖୁସି ହେବେ, ଏଥିରେ ସନ୍ଦେହ ନାହିଁ । ଏହି କାମ ସେ ଆରମ୍ଭ କରିଥିଲେ ତାଙ୍କ 'ହିନ୍ଦୀ କାବ୍ୟଧାରା' ବହିରେ ଅପଭ୍ରଂଶ କବିତାର ସଂଗ୍ରହକୁ ଦେଇ । ଏହି ପୁସ୍ତକରେ ପୁରୁଣା ହିନ୍ଦୀ କବିତା ସାଥିରେ ସଂଶ୍ଳିଷ୍ଟ ସିଦ୍ଧି ଓ ନାଥ ସାହିତ୍ୟର ପଦ ଯୁକ୍ତ କରିଥିଲେ ।

ସହର ପାଦ, କାହ୍ନୁ ପାଦ, ଡୋମ୍ବିଆ ଇତ୍ୟାଦି ବହୁ ପ୍ରାଚୀନ କବିମାନଙ୍କର ରଚନା ଏଥିରେ ଅଛି ଯୋଉଥିରୁ ହଜାରେ ବର୍ଷ ପୂର୍ବରୁ ଆମ ସମାଜରେ ଜାତିଭେଦ ପ୍ରଥା ଓ ଅନ୍ୟାନ୍ୟ କୁସଂସ୍କାର ପ୍ରତି ବିରୋଧାଭାଷ ମଧ୍ୟ ମିଳେ । ଏଥିରେ ସିଦ୍ଧାଚାର୍ଯ୍ୟଙ୍କ ପରେ କବୀର, ଦାଦୁ, ରୁଇ ଦାସ, ନାମ ଦେବ ଇତ୍ୟାଦି ଅର୍ଥାତ୍ ଯୋଉମାନେ ବିଦ୍ରୋହୀ କବିମାନଙ୍କର ଅଗ୍ରଜ ସେମାନଙ୍କୁ ଦେଖିବାକୁ ମିଳେ । ଅବଦୁର ରହମାନ ଓ ପୁଫ୍‌ଫଦନ୍ତଙ୍କର ସୁନ୍ଦର ରଚନାଗୁଡ଼ିକର 'ଗାଥା ସପ୍ତସତୀ' କାବ୍ୟ ରଚନାର ଆଭାସ ମିଳେ । ରାହୁଲ ସ୍ୱୟମ୍ଭୂର ଜୈନ ରାମାୟଣ ବିଷୟରେ ଏପରି ଏକ ଲେଖା ପ୍ରକାଶ କରିଥିଲେ ଯୋଉଥିରୁ ଜଣାପଡ଼େ ଯେ ତୁଳସୀ ଦାସ 'ଦୋହା ଚେପାଇ' ପୁସ୍ତକରେ ଯୋଉ ଶିଳ୍ପ ପଦ୍ଧତି ପ୍ରୟୋଗ କରିଥିଲେ ତାର ଉତ୍ସ ଏଇ ମୂଲ୍ୟବାନ୍ ଗବେଷଣାମୂଳକ ଗ୍ରନ୍ଥ ମଧ୍ୟ ରହିଛି । ଏହିପରି ତଥ୍ୟମୂଳକ ରଚନା ସେ 'କୁତୁବ ମୁସ୍ତରୀ' ଇତ୍ୟାଦି ଦକ୍ଷିଣ ଅଞ୍ଚଳ ବିଷୟରେ ଲେଖା ରହିଛି । ବହିର ନାମ 'ଦକ୍ଷିଣୀ କାବ୍ୟଧାରା' । ଏହି ବହିର ଭୂମିକାରେ ରାହୁଲଙ୍କ ମନ୍ତବ୍ୟ ଥିଲା କେବଳ ଭାଷାରେ ନୁହେଁ ଦକ୍ଷିଣରେ ଥିବା ସାଧୁ ସନ୍ୟାସୀଙ୍କର ଆଚାର – ଆଚରଣ, ଲୋକ ସଂଗୀତ, ଓ କବି କଳ୍ପନା କିପରି ଭାରତୀୟ ଭାବଧାରା ସହିତ ଏକାକାର ହେଇ ଯାଇଛି ତାହା ଦେଖିବାକୁ ମିଳେ । କିନ୍ତୁ ଏ ପ୍ରକାର ମୌଳିକ ଚିନ୍ତାଧାରା ସମ୍ପନ୍ନ ଐତିହାସିକ ଗ୍ରନ୍ଥ ମାତ୍ର ଖଣ୍ଡେ ପ୍ରକାଶିତ ହୋଇଛି । ହିନ୍ଦୀ ସାହିତ୍ୟର ଇତିହାସକୁ ତାଙ୍କର ଏହା ଗୋଟିଏ ବିଶେଷ ଦାନ ।

ସୋଭିଏତ ରୁଷିଆରୁ ଫେରି ଆସି ଶତ୍ରୁଦ୍ଦୀନ ଧେନୀଙ୍କ ବହିକୁ ହିନ୍ଦୀରେ ଅନୁବାଦ କରିବା ପରେ ରାହୁଲ ତାଙ୍କ ମାତୃ ଭାଷାରେ ହିନ୍ଦୀ ପ୍ରଦେଶର ମାନଚିତ୍ର ପୁଣିଥରେ ଅଙ୍କନ କରିବା ପାଇଁ ଉତ୍ସାହ ପ୍ରକାଶ କରିଥିଲେ । ସେ ଚାହୁଁଥିଲେ ଭୋଜପୁରୀ, ମୈଥିଳୀ, ବ୍ରଜ, ଅବଧି, ବୁନ୍ଦେଲ ଖଣ୍ଡି, ମାଲବୀ, ରାଜସ୍ଥାନୀ ଇତ୍ୟାଦି ପ୍ରାଥମିକ ଶିକ୍ଷାର ମାଧ୍ୟମ ହେଉ । ସେ ଭୋଜପୁରୀ ଭାଷାରେ ଆଠଟି ନାଟିକା ରଚନା କରିଥିଲେ । ସେ ବିଶ୍ୱାସ

କରୁଥିଲେ ଲେଖାର ଖୋଡ଼ିବୋଲି ଭାଷା ହିନ୍ଦୀ ମୌଖିକ ଭାଷାର ଖୁବ ନିକଟତମ ହେବା ଉଚିତ। ଏହି କାରଣରୁ ସେ ତାଙ୍କର 'ଭାଗେ ନେହିଁ, ଦୁନିଆକୋ ବଦଲୋ' ଗ୍ରନ୍ଥଟି ଲେଖିବା ସମୟରେ ଯେତେଦୂର ସମ୍ଭବ ସଂସ୍କୃତ ଓ ପାର୍ଶି ଶବ୍ଦଠାରୁ ଦୂରରେ ରଖିଥିଲେ । କୃତ୍ରିମ ହିନ୍ଦୁସ୍ଥାନୀ ଭାଷାକୁ ସେ ବ୍ୟଙ୍ଗ ବିଦ୍ରୁପ କରୁଥିଲେ । କାରଣ ସେ ଜାଣୁଥିଲେ ଯେ ଏହି ଭାଷାରେ କୌଣସି ମହତ ରଚନା ସମ୍ଭବ ନୁହେଁ । (ସୁମିତ୍ରାନନ୍ଦନ ପନ୍ଥ ବା ଇକବାଲଙ୍କ କବିତାକୁ ବୁଝି ହେଇଯାଏ କିନ୍ତୁ ତାକୁ ହିନ୍ଦୁସ୍ଥାନୀରେ କପରି ଲେଖିବା ସମ୍ଭବ ? ତାଙ୍କ ଆତ୍ମକଥାର ଦ୍ୱିତୀୟ ଶକ୍ତିରେ ସେ ଏଇ ପ୍ରଶ୍ନ କରିଛନ୍ତି ।) ଏପରିକି ସେ ସ୍ଥିର କରିଥିଲେ ଯେ ଜନ ସାଧାରଣ ଓ କୃଷକ ମଜଦୁରଙ୍କ ପାଖରେ ପହଞ୍ଚିବାକୁ ହେଲେ ତାହା କୃତ୍ରିମ ଭାଷା ସାହାଯ୍ୟରେ ନୁହେଁ, ଲୋକ ପ୍ରଚଳିତ ଭାଷାକୁ ଗ୍ରହଣ କରିବାକୁ ପଡ଼ିବ । ସେ ଡ଼ା. ରଘୁବୀରଙ୍କ କୃତ୍ରିମ ସଂସ୍କୃତ ନିଷ୍ଠ ଶବ୍ଦ ପ୍ରୟୋଗରେ ସମାଲୋଚନା କରିଛନ୍ତି ।

ଶାସନ ଶବ୍ଦକୋଷର (ବିଦ୍ୟାନିବାସ ମିଶ୍ର ଓ ସେହି ପୁସ୍ତକର ଲେଖକ ଦ୍ୱାରା ସଂଗୃହିତ ଏବଂ ରାହୁଲଙ୍କ ଦ୍ୱାରା ସଂପାଦିତ, ହିନ୍ଦୀ ସାହିତ୍ୟ ସମ୍ମେଳନ, ପ୍ରୟାଗରୁ ୧୯୪୮ରେ ପ୍ରକାଶିତ) ଭୂମିକାରେ ରାହୁଲ କୋଷ ନିର୍ମାଣ ପଦ୍ଧତି କଥା ଆଲୋଚନା କରିଛନ୍ତି । ଏହି କୋଷରେ ମୂଳ ଇଂରାଜୀ ଶବ୍ଦ ଛଡ଼ା, ପ୍ରଚଳିତ ପ୍ରତିଶବ୍ଦ ଯାହା ହିନ୍ଦୀ କୋଷରେ ଉପଲବ୍ଧ, ଡକ୍ଟର ରଘୁବୀରଙ୍କ ବିଚିତ୍ର ନୂତନ ଶବ୍ଦଗୁଡ଼ିକୁ ସେ ସେଥିରେ ସ୍ଥାନିତ କରିଛନ୍ତି । ତା ଛଡ଼ା ତାଙ୍କ ପସନ୍ଦ ଅନୁଯାଇ କିଛି ସହଜ ଓ ପ୍ରଚଳିତ ଶବ୍ଦ ମଧ୍ୟ ସେଥିରେ ଅଛି । ଯେପରିକି ଇଂରାଜୀରେ 'ଏକାଡ଼େମୀ' - ଏଇ ଶବ୍ଦଟିକୁ ସେ ହିନ୍ଦୀରେ ଲେଖିଛନ୍ତି 'ଅକାଦେମୀ' ଇତ୍ୟାଦି ।

ଲୋକଗୀତ, ଲୋକକଥା, ଲୋକନାଟ୍ୟ ରାହୁଲଙ୍କ ଖୁବ୍ ପ୍ରିୟ ଥିଲା । ସେ ଭୋଜପୁରୀ ଲୋକକବି ବିସରାମଙ୍କ ଉପରେ ଲେଖିଛନ୍ତି । ବିସରାମଙ୍କ ଅତି ଅଳ୍ପ ବୟରେ ମୃତ୍ୟୁ ହୋଇଯାଇଥିଲା । ବିସରାମଙ୍କ ଲୋକଗୀତଗୁଡ଼ିକୁ ସେ ଗୋଟିଏ ସଂକଳନରେ ସଂଗ୍ରହ କରିଛନ୍ତି । ଠିକ୍ ସେମିତି ବୁନ୍ଦେଲଖଣ୍ଡର ଲୋକକବି ଇସୁରୀଙ୍କ ଉପରେ ମଧ୍ୟ ଲେଖିଛନ୍ତି । ରାହୁଲ ଡ଼. ରାଜେନ୍ଦ୍ର ପ୍ରସାଦଙ୍କ ସାଥିରେ ଭୋଜପୁରି ଭାଷାରେ ଓ ଡ଼. ଅମର ନାଥଙ୍କ ସାଥିରେ ମୈଥିଳୀରେ କଥାବାର୍ତ୍ତା କରୁଥିଲେ । ନୈନିତାଲର 'ସିଲଭର୍ ଓକ୍'ରେ ରାହୁଲଙ୍କ ଘରପାଖରେ ବାସ କରୁଥିବା ଜଣେ ବୃଦ୍ଧାଙ୍କ ମୁହଁରୁ ଶୁଣି ଶୁଣି ସେ ତାଙ୍କର

'ଆଦି ହିନ୍ଦୀ କି କହାନୀୟା ଅଉର ଗୀତେ' ପୁସ୍ତକ ଖଣ୍ଡିକ ରଚନା କରିଥିଲେ । ତାଙ୍କ ମତରେ ଆଧୁନିକ ଖାଡ଼ିବୋଲି ହିନ୍ଦୀ ଭାଷାର ଜନନୀ ଆଗ୍ରା-ମିରଟ ଅଞ୍ଚଳର କୌରବୀ ଭାଷା । ଏହି ଲୋକଗୀତ ଓ ଲୋକଗାଥା ଉପରେ ହରିଆଣଭି ଓ ବ୍ରଜଭାଷାର ପ୍ରଭାବ ଅଛି । ଏମିତି କିଛି କିଛି ଉର୍ଦ୍ଦୁର ମଧ ପ୍ରଭାବ ରହିଛି ।

ରାହୁଳ ହିନ୍ଦୀ ରାଷ୍ଟ୍ରଭାଷା ବୋଲି ସ୍ୱୀକାର କରୁଥିଲେ ଏବଂ ଏ ବିଷୟରେ ସେ ଅତ୍ୟନ୍ତ କଠୋର ମନୋଭାବ ପୋଷଣ କରୁଥିଲେ । ତା ସତ୍ୱେ ସେ ଅନ୍ଧ ପ୍ରାଦେଶିକବାଦୀ ନଥିଲେ । ସେ ଭାବୁଥିଲେ ହିନ୍ଦୀ ସହିତ ଆଉ ସବୁ ଉପଭାଷା (ବା ମାତୃଭାଷା ଯାହା ସେ କହୁଥିଲେ ଯଥା ଅବଧି, ଭୋଜପୁରୀ, ବ୍ରଜ, ମୈଥିଳୀ, ରାଜସ୍ଥାନୀ ଇତ୍ୟାଦି ସବୁ ଭାଷା ଏତେ ଶକ୍ତିଶାଳୀ ଯେ ସେଗୁଡ଼ିକ ପ୍ରାଥମିକ ଶିକ୍ଷାର ମାଧମ ହେବା ଉଚିତ । ଅବଶ୍ୟ ତାଙ୍କର ଏହି ମତକୁ କେହି କେହି ସମାଲୋଚନା କରି କହୁଥିଲେ ଯେ ରାହୁଳ ଏଇ ଭାବରେ ସୋଭିଏତ ଦେଶର ପଦ୍ଧତିକୁ ଭାରତକୁ ଆଣିବାକୁ ଚାହୁଁଛନ୍ତି । ଗତ ମହାଯୁଦ୍ଧ ସମୟରେ ସେ ନିଜେ କିଛି ଭୋଜପୁରୀ ଏକାଙ୍କ ନାଟକ ରଚନା କରିଥିଲେ । ଏ ସବୁ କଥା ତିରିଶ ବର୍ଷ ଆଗର । ଯେତେବେଳେ ରାଜସ୍ଥାନୀ ଓ ନେପାଳୀ ଭାଷାର ସାହିତ୍ୟ ବିଷୟରେ କୌଣସି ପ୍ରଶ୍ନ ଉଠି ନ ଥିଲା କେବଳ ମୌଖିକ ଭାବରେ ତାହା ବ୍ୟବହୃତ ହେଉଥିଲା । ପରେ ଅବଶ୍ୟ ସାହିତ୍ୟ ଏକାଡ଼େମୀ ଏ ସବୁ ଭାଷାର ମୂଲ୍ୟାୟନ କରିଛି । ଏବଂ ଏଇ ସବୁ ଭାଷାର ସୁରକ୍ଷା ପାଇଁ ଯୁଦ୍ଧ ବି କରିଛନ୍ତି । ତେବେ ଦୁର୍ଭାଗ୍ୟ ବଶତଃ ୧୯୪୮ ମସିହାରେ ବିଶ୍ୱରେ ହିନ୍ଦୀ ସାହିତ୍ୟ ସମ୍ମେଳନର ଗୋଟିଏ ଅଧିବେଶନରେ ସେ ଉର୍ଦ୍ଦୁ ଭାଷାର ଲିପି ଦେବନାଗରୀ ହେବା ଉଚିତ ବୋଲି ଦାବି କରିବାରୁ କିଛି କମ୍ୟୁନିଷ୍ଟ ଉର୍ଦ୍ଦୁଭାଷାର ବିରୋଧାଚରଣ କରିବାରୁ ତାଙ୍କୁ କମ୍ୟୁନିଷ୍ଟ ପାର୍ଟିରୁ ବହିଷ୍କାର କରାଯାଇଥିଲା ।

ପ୍ରତ୍ୟେକ ଜାତିର ମାତୃଭାଷା ପ୍ରତି ରାହୁଳଙ୍କର ସମର୍ଥନ ଥିବାରୁ ସେ ବିଷୟରେ କଠୋର ସମାଲୋଚନା କରନ୍ତି ବନାରସି ଦାସ ଚତୁର୍ବେଦୀ, ଡକ୍ଟର ବାସୁଦେବ ଶରଣ ଅଗ୍ରୱାଲ, ପଣ୍ଡିତ କ୍ଷେତ୍ରେଶ ଚନ୍ଦ୍ର ଚଟ୍ଟୋପାଧ୍ୟାୟ ଓ ଡ. ଉଦୟ ନାରାୟଣ ତିୱାରୀ । କିନ୍ତୁ ଯଶପାଳ ଜୈନଙ୍କର 'ମଧୁକର' ପତ୍ରିକା ରାହୁଳଙ୍କୁ ସମର୍ଥନ କରିଥିଲେ ।

ଏ ବିଷୟରେ ରାହୁଳ ଆଉ ଗୋଟିଏ କାମ ମଧ କରିଥିଲେ । ଆଲାହାବାଦର 'ହିନ୍ଦୀ ସାହିତ୍ୟ ସମ୍ମେଳନ' ତରଫରୁ ପ୍ରକାଶିତ ବୃହତ ହିନ୍ଦୀ ସାହିତ୍ୟର ଇତିହାସର 'ଉପଭାଷାଓଁ' ନାମକ ଗ୍ରନ୍ଥର ସମ୍ପୂର୍ଣ୍ଣ ଅଂଶଟି ସଂପାଦିତ କରିଥିଲେ । ବିଦ୍ୱାନ, ପଣ୍ଡିତ ଓ ମନିଷୀମାନଙ୍କର

ନିଜ ମାତୃଭାଷାର ଓ ବିଭିନ୍ନ ଭାଷା ବିଷୟରେ ଗୋଟିଏ ବିଶେଷ ପ୍ରବଂଧ ସେ ଏଥିରେ ପ୍ରକାଶ କରିଥିଲେ । ଯେମିତି ଭୋଜପୁରୀ, ମୈଥିଳୀ, ମାଗଧି, ଅବଧି, ବ୍ରଜ, ବୁନ୍ଦେଲଖଣ୍ଡି, ରାଜସ୍ଥାନୀ, ମାଳବୀ । ନିମାଡ଼ି ଓ ହିମାଚଳ ପ୍ରଦେଶର କି ପାହାଡ଼ି ଉପଭାଷା ମଧ ସେଥିରେ ସ୍ଥାନ ପାଇଥିଲା । କେବଳ ଏଇ କାମ ପାଇଁ ରାହୁଳଙ୍କର ରାଷ୍ଟ୍ରୀୟ ସମ୍ମାନ ପାଇବାର ଥିଲା - କିନ୍ତୁ ତା ବଦଳରେ ପଦ୍ମଭୂଷଣ ଉପାଧି ତାଙ୍କୁ ମିଳିଥିଲା । ସେଇଟା ମଧ ରାହୁଳଙ୍କ ଜୀବନର ଶେଷ କାଳରେ । ସେତେବେଳେକୁ ସମ୍ପୂର୍ଣ୍ଣ ସ୍ମୃତିଭ୍ରଷ୍ଟ ।



# ସାହିତ୍ୟିକ ଅବଦାନ

ରାହୁଲଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭା ଥିଲା ବହୁମୁଖୀ । ତାଙ୍କର ବିତର୍କମୂଳକ ରାଜନୀତି, ଭାଷାତତ୍ତ୍ୱ, ସମାଜ ସଂସ୍କାର, (ସେ ଥରେ ଗୋଟିଏ ଜନସଭାରେ କହିଥିଲେ ହିନ୍ଦୁମାନଙ୍କର ଗୋରୁମାଂସ ଖାଇବା ଉଚିତ। ସେଥିପାଇଁ ସନାତନ ପନ୍ଥୀ ହିନ୍ଦୁମାନେ ତାଙ୍କ ଉପରକୁ ପଥର ଫୋପାଡ଼ିଥିଲେ) ଇତ୍ୟାଦି ବିଷୟ ବାଦ୍ ଦେଇ ତାଙ୍କର ହିନ୍ଦୀ ସାହିତ୍ୟକୁ ଅବଦାନ ବିଷୟରେ ଆମର ଆଲୋଚନା କରିବା ଉଚିତ। ସେଥିରୁ ଏଇ ଅଧ୍ୟାୟରେ ରାହୁଲଙ୍କ  ଚିନ୍ତା, ଶିଳ୍ପ ଶୈଳୀ, ରଚନାର ବିଷୟବସ୍ତୁ ସମ୍ପର୍କରେ କିଛି ସୂଚନା ମିଳିବ ।

ପରସ୍ପର ବିରୋଧି ମତ ଭିତରେ ଗୋଟିଏ ଆଶ୍ଚର୍ଯ୍ୟଜନକ ସମନ୍ୱୟର ଚେଷ୍ଟା ଥିଲା ରାହୁଲଙ୍କ ଜୀବନଯାପନ ପ୍ରଣାଳୀରେ ଓ ତାଙ୍କ ରଚନାରେ । ଯେତେ ଦିନ ଯାଏ ସେ ନିଜକୁ ବ୍ରାହ୍ମଣ ବୋଲି ଭାବୁଥିଲେ ସେତେଦିନ ପର୍ଯ୍ୟନ୍ତ ସେ ନିଜ ବ୍ରାହ୍ମଣତ୍ୱର ପୂର୍ଣ୍ଣତା ଖୋଜି ଥିଲେ ବୌଦ୍ଧ ଧର୍ମ ଭିତରେ ।

ସନାତନ ଧର୍ମ ମତରେ ସେ ବହୁ ଦେବତା ଓ ମୂର୍ତ୍ତି ପୂଜାର ବିରୋଧୀ ଥିଲେ । ପରେ ଅବଶ୍ୟ ଏ ସବୁ ବିଷୟରେ ସେ ଆଉ ବେଶୀ ଚିନ୍ତା କରି ନଥିଲେ । ପଣ୍ଡିତ ଓ ମୌଲବୀମାନଙ୍କ ଠାରୁ ସେ ସଂସ୍କୃତ ଓ ଆରବୀ ଭାଷା ଶିକ୍ଷା କରିଥିଲେ । ପାଲି ଭାଷା ଶିକ୍ଷା କରିଥିଲେ ସେ ଭାରତ, ନେପାଳ ଓ ତିବ୍ବତରେ ଥିବା ବୌଦ୍ଧ ଭିକ୍ଷୁମାନଙ୍କ ଠାରୁ । ତଥାପି ସେ ଥିଲେ ସବୁ ବିଷୟରେ ଉନ୍ମୁକ୍ତ ଚେତନା ସମ୍ପନ୍ନ । କୌଣସି ଗୋଟିଏ ବିଷୟରେ ସେ ବାନ୍ଧି ପଡ଼ିନଥିଲେ ।

ଅପଭ୍ରଷ୍ଟ ଭାଷା ପ୍ରତି ତାଙ୍କର ସମର୍ଥନ ଥିଲା ଓ ଶ୍ରମିକ ମଜଦୁରମାନଙ୍କର ଭଂଗା

ଭଂଗା ଭାଷାକୁ ସେ ଭଲ ପାଉଥିଲେ । ତେଣୁ ସେ ନିଜକୁ ବର୍ଗହୀନ ବୋଲି ପରିଚୟ ଦେଉଥିଲେ ।

ଶୈଶବରୁ ରାହୁଲ ତାଙ୍କ ପରିବାର ସମ୍ପର୍କ ଛିନ୍ନ କରିଥିଲେ ଏବଂ ତା ପରେ ସେ 'ସର୍ବହରା'ର ଅଧିନାୟକ ହେଇ ଯାଇଥିଲେ । ସେ ତେଣୁ ଋଷିଆର 'ସୋଲଖୋଜ' ଓ ଚୀନର ''କମ୍ୟୁନ' ଦେଖି ଖୁବ ଖୁସି ହେଉଥିଲେ । ସେ ମଠ, ବିହାର ଏବଂ ସାଧୁ ସନ୍ଥମାନଙ୍କର ଗୁପ୍ତ କିମ୍ବା ପ୍ରକାଶ୍ୟ ଏବଂ ଲାମାମାନଙ୍କର ଧର୍ମରାଜ୍ୟ ଶାସନର ଏକନାୟକ ତନ୍ତ୍ରକୁ ତୀବ୍ର ନିନ୍ଦା କରୁଥିଲେ । ତାର କାରଣ ସେ ତଥାକଥିତ ଧାର୍ମିକ ନ ଥିଲେ । କିନ୍ତୁ ଭାରତୀୟ ଓ ଭାରତର ସଂସ୍କୃତି ପ୍ରତି ତାଙ୍କର ପ୍ରଚୁର ଅନୁରାଗ ଥିଲା ।

ଭାରତର ରାଷ୍ଟ୍ରଭାଷା ପ୍ରସଙ୍ଗରେ ୧୯୪୮ ମସିହାରେ ସେ କମ୍ୟୁନିଷ୍ଟ ପାର୍ଟିର ଭାଷା ନୀତି ଠାରୁ ସ୍ୱେଚ୍ଛାରେ ଦୂରେଇ ଆସିଥିଲେ । ସଜ୍ଜାଦ ଜହିର ଓ ଡ଼. ରାମ ବିଳାସ ଶର୍ମା ଗୋଟିଏ ପଟରେ ଓ ତାଙ୍କ ସମର୍ଥକମାନେ ଅନ୍ୟ ପଟରେ ଥାଇ ଯୋଉ ମତ ପୋଷଣ କରିଥିଲେ ଆମେ ତା ସପକ୍ଷରେ କିମ୍ବା ବିପକ୍ଷରେ କିଛି ଆଲୋଚନା ଏଠି କରୁ ନାହୁଁ । ସ୍ୱଭାବତଃ ଚିର ଅଶାନ୍ତ ଅନ୍ତର୍ଦ୍ୱନ୍ଦ ତାଙ୍କ ମନ ଭିତରେ ସବୁବେଳେ ପ୍ରବାହିତ ହେଉଥିଲା ଏବଂ ସେ ସବୁହିଁ ତାଙ୍କ ରଚନାକୁ ବୈଶିଷ୍ଟ୍ୟ ପ୍ରଦାନ କରିଛି ।

ତାଙ୍କର ଦିନଲିପି ଲେଖାର ଭାଷା ଥିଲା ଅତି ଜୀବନ୍ତ । ସେଥିରେ ମଧ୍ୟ ରାହୁଲଙ୍କର ଜିଜ୍ଞାସୁ ମନର ପରିଚୟ ମିଳେ । ତାଙ୍କ ଆତ୍ମକଥା ରଚନା ବେଳେ ସେ ଏଇ ଦିନଲିପିକୁ ବେଶୀ ଭାଗ ବ୍ୟବହାର କରିଥିଲେ ।

ରାହୁଲଙ୍କ ଏଇ ରଚନାରେ ଗୋଟାଏ ଦ୍ୱୈତ ସତ୍ତାର ଆଭାସ ମିଳେ । ଜଣେ ରାହୁଲ ଉପଭୋଗ କରିଚନ୍ତି ଏବଂ ଆଉ ଜଣେ ଦେଖିଛନ୍ତି-ଏପରି ଦୁଇଟି ପୃଥକ ସତ୍ତା ।

ନିୟମ ଅନୁସାରେ ଶିକ୍ଷାର ଅଭାବ ପୂରଣ ପାଇଁ ସେ ଖୁବ୍ ବେଶୀ ଜ୍ଞାନର ସଂଧାନ କରିଛନ୍ତି ପୁଣି ଗୋଟିଏ ବିଷୟରେ ଅଧିକ ଜାଣିବା ପାଇଁ ଚେଷ୍ଟା କରିଚନ୍ତି - ଏ ଦୁଇଟା କାମ ଜଣେ ଲୋକ ପକ୍ଷେ ସମ୍ଭବ ନୁହେଁ। ସେ ଏକା ସଂଗରେ ବୁଦ୍ଧି ଦ୍ୱାରା ବାସ୍ତବ ଆନନ୍ଦ ଉପଭୋଗ କରିବା ସହିତ ନିଜର ମାନସାଲୋକରେ ହିମାଳୟର କୌଣସି ଦୃଶ୍ୟ ଦେଖିବାରେ ନିମଗ୍ନ ଥାଆନ୍ତି । ପୁଣି ବାସ୍ତବ ଚେତନାକୁ ଫେରି ଆସି ସମାଜର ତଥାକଥିତ ବଡ଼ ବଡ଼ ଓ ପ୍ରତିଷ୍ଠିତ ଲୋକର ଅନାଚାର ଓ ଅତ୍ୟାଚାର ବିରୁଦ୍ଧରେ ବ୍ୟଙ୍ଗ ବିଦ୍ରୁପ ମଧ୍ୟ କରନ୍ତି ।

ତାଙ୍କ ରଚନା ଶୈଳୀ କଠିନ ମନେ ହେଲେ ମଧ୍ୟ ପାଠକ ତାର ରସବୋଧର ଅଭାବ

ଉପଲବ୍ଧି କରନ୍ତି ନାହିଁ । କାରଣ ତାଙ୍କ ରଚନାରେ ପାଠକ ପ୍ରତି ମୁହୂର୍ତ୍ତରେ ଏକ ଅଭାବିତ ଅଭିନବତ୍ୱର ସଂଧାନ ପାଇଁ ଥାଆନ୍ତି । ଏଥିରେ ପାଠକମାନେ ଅବିଭୂତ ନ ହେଇ ରହି ପାରୁ ନ ଥିଲେ । ସାଧାରଣ ପାଠକଙ୍କ କଥା ଭାବି ରାହୁଲ ତାଙ୍କ ରଚନାର ପ୍ରତ୍ୟେକ ପୃଷ୍ଠାରେ ନୂଆ ନୂଆ ଜ୍ଞାନର ସଂଧାନ ଦେଇଚନ୍ତି ।

ଏହି ଭାବରେ ରାହୁଲ ଗୋଟିଏ ଅଜଣା ମଣିଷକୁ ଜ୍ଞାନର ସଂଧାନ ଦେଇଛନ୍ତି, ତାର ସହମର୍ମୀ ହେଇଛନ୍ତି ଓ ତାକୁ ଉତ୍ତରଣର ପଥ ମଧ୍ୟ ଦେଖେଇଛନ୍ତି । ତାଙ୍କ ମନରେ କେବେ ଉଦାସୀନତା ବା ବ୍ୟର୍ଥତାର ଭାବ ପ୍ରକାଶ ପାଇନାହିଁ । ଫଳରେ ତାଙ୍କ ରଚନା ସାମାନ୍ୟରୁ ହେଇ ଉଠିଚି ଅସାମାନ୍ୟ, ଏପରିକି ସଂକ୍ରାମକ ।

ଇଂରେଜ କବି କୀଟସ୍‌ଙ୍କ ଭ୍ରାମ୍ୟମାଣ ଜୀବନ ଥିଲା ରାହୁଲଙ୍କ ଆଦର୍ଶ ଓ ଜୀବନ ବେଦ – 'ନିତ୍ୟ ଭ୍ରମଣ କରୋ', ସୁଖ ଘରେ ବଂଧା ପଡ଼ ନାହିଁ, ବନ୍ଧନ ମୁକ୍ତ କର" । ତାଙ୍କର ଘୁମକ୍କଡ଼ ଶାସ୍ତ୍ର' ବହିରେ ସେ ପଳାୟନବାଦୀ ନୁହଁନ୍ତି, କିନ୍ତୁ ଜୀବନରେ ସେ ନିରାସକ୍ତ ଓ ମୁକ୍ତିର ପୂଜାରୀ ଥିଲେ – ସେ କଥା ସ୍ପଷ୍ଟ କରି ଦେଇଚନ୍ତି ।

ବାଲ୍ୟକାଳରୁ ସେ କେବେ କେବେ ସାଧୁ ସନ୍ଥଙ୍କ ସହିତ ସନ୍ୟାସ ଗ୍ରହଣ, କେତେବେଳେ ବା ରାସ୍ତାର ପଥିକ, ପରେ ପୁଣି କୃଷକ ଓ ମଜଦୂରଙ୍କ ସହିତ ମିଶି ସକ୍ରୀୟ ରାଜନୀତିରେ ଯୋଗଦାନ, ତିବ୍‌ବତ ଓ ଋଷିଆ (ପରସ୍ପର ବିରୋଧୀ ରାଜ୍ୟ) ଭ୍ରମଣ – ଏହିପରି ଭାବରେ ଗୋଟାଏ ଆଦର୍ଶ ତାଙ୍କୁ ଭ୍ରାମ୍ୟମାଣ କରି ଗଢ଼ି ତୋଳି ଥିଲା ।

ଯେଉଁ ବ୍ୟକ୍ତି ଏଇ ପରି ଜୀବନକୁ ଭଲ ପାଉଥିଲେ ଏବଂ ଯେ ପୁଣି ବହୁ ବିଶେଷଣ ପୂର୍ଣ୍ଣ ପ୍ରଶଂସାର ସହିତ ତାଙ୍କ ଭ୍ରମଣ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି ସେ ଯାତ୍ରୀ, ଭିକ୍ଷୁ ଭଦନ୍ତ ବା ମହନ୍ତ, ପରିବ୍ରାଜକ, ବ୍ରହ୍ମଚାରୀ, ବାବା ଇତ୍ୟାଦି ପ୍ରକୃତିର ମଣିଷମାନଙ୍କୁ ହିଁ ସ୍ୱାଭାବିକ ଭାବରେ ଭଲ ପାଉଥିଲେ । ତାଙ୍କର 'ଅତୀତ ସେ ବର୍ତ୍ତମାନ' ଏବଂ 'ଜିନ୍‌କା ମେ' କୃତଜ୍ଞ' ଏ ଦୁଇ ଖଣ୍ଡ ବହିରେ କେବଳ ସାଧୁ ସନ୍ଥ ନୁହଁନ୍ତି, ବିଭିନ୍ନ ଧର୍ମାବଲମ୍ବୀ ମହାପୁରୁଷ – ହିନ୍ଦୁ, ଶିଖ୍, ବୌଦ୍ଧ, ଜୈନ, ଖ୍ରୀଷ୍ଟାନ ଏବଂ ଏପରିକି ନାସ୍ତିକମାନଙ୍କ କଥା ମଧ୍ୟ ଉଲ୍ଲେଖ ଅଛି । ତାଙ୍କର ଏଇ ବିଶାଳ ଦୃଷ୍ଟିଭଂଗୀର ପରିଚୟ ପାଇଁ ଏଠାରେ ଏହି ପୁସ୍ତକମାନଙ୍କ ଭିତରୁ ମାତ୍ର ଚାରିଟି ଉଦାହରଣ ଦିଆଯାଉଛି ।



# ଆଚାର୍ଯ୍ୟ ନରେନ୍ଦ୍ର ଦେବ

'ନରେନ୍ଦ୍ର ଦେବ ଥିଲେ ଆଜୀବନ ବୁଦ୍ଧିବାଦୀ । କିଛି ଲୋକଙ୍କ ଉପରେ ବାର୍ଦ୍ଧକ୍ୟର ଚାପ ପଡୁଥିଲେ ମଧ୍ୟ ତାଙ୍କ ଉପରେ ସେ ଛାପ ମୋଟେ ପ୍ରକାଶ ପାଇ ନଥିଲା । ରାଜନୀତିରେ ଦଳାଦଳି ବିରୁଦ୍ଧରେ ସେ ପରିହାସ ଛଳରେ 'ଚୋଚ ପନ୍ଥ' ନାମରେ ଗୋଟିଏ ଦଳ ଗଠନ କରିଥିଲେ । ନରେନ୍ଦ୍ର ଦେବ ଥିଲେ ସେ ଦଳର ନେତା । ତାଙ୍କ ଦଳରେ ତାଙ୍କ ସହିତ କେବେବି ମତାନୈକ୍ୟ ଘଟେ ନାହିଁ । ଦଳରେ ପ୍ରତ୍ୟେକ ଥିଲେ ତାଙ୍କର ସମବୟସୀ ଓ ବନ୍ଧୁ । ସେମାନେ ଜଣେ ଅନ୍ୟ ଜଣଙ୍କୁ ଭେଟିଲେ 'ଜୟ ଚୋଚ ଭଗବାନ' ବୋଲି କହି ଅଭିବାଦନ କରୁଥିଲେ ।

ଆଚାର୍ଯ୍ୟ ଦେବ ଥିଲେ ବିଦ୍ୱାନ ଓ ଗଭୀର ଚିନ୍ତାଶୀଳ ପ୍ରକୃତିର ବ୍ୟକ୍ତି । ଏପରିକି ବିଳାସ ଭିତରେ ମଧ୍ୟ ସେ ଥିଲେ ଆଦର୍ଶବାଦୀ । ସମାଜବାଦ ଦ୍ୱାରା ସମାଜ କଲ୍ୟାଣ ସମ୍ଭବ ବୋଲି ସେ ବିଶ୍ୱାସ କରୁଥିଲେ । ଏଇଥିପାଇଁ ସେ ତା ପ୍ରତି ବେଶୀ ଆକୃଷ୍ଟ ହେଇ ପଡ଼ିଥିଲେ । ମାର୍କସଙ୍କ ଦ୍ୱାରା ପ୍ରଭାବିତ ନରେନ୍ଦ୍ର ଦେବଙ୍କର ମାର୍କସବାଦୀ ସମାଜଟିଏ ଲୋଡ଼ା ଥିଲା । ଏଥିରେ ଆମେ ଦୁଇ ଜଣ ଯାକ ଏକମତ ଥିଲୁ। ଯେତେଦିନ ପର୍ଯ୍ୟନ୍ତ ମୋତେ କମ୍ୟୁନିଜମ୍ ଆକର୍ଷଣ କରୁଥିଲା ଏବଂ ସେ ମଧ୍ୟ ଯେତେଦିନ ଯାଏ ସୋସିଆଲିଷ୍ଟ୍ ଥିଲେ ଆମର ଦୁଇ ପାର୍ଟିର ସମ୍ପର୍କ କେବେବି ତିକ୍ତ ହେଇନି । ଲବଣ ସତ୍ୟାଗ୍ରହ ସମୟରେ ମୁଁ କାଶୀ ବିଦ୍ୟାପୀଠରେ ଥିଲି । ମାର୍କ୍ସଙ୍କ 'କମ୍ୟୁନିଷ୍ଟ ଇସ୍ତାହାର'ର ହିନ୍ଦୀ ଅନୁବାଦ ଆମେ ଦୁଇଜଣ ମିଶି କରିଥିଲୁ । ତାର କିଛି ଅଂଶ ଛପା ହୋଇଥିଲା ପ୍ରେମଚାନ୍ଦଙ୍କ ପ୍ରେସ୍‌ରେ'.... (ଜନକା ମେଁ କୃତଜ୍ଞ, ପୃ-୧୮୩-୮୪) ।



# ସାଥୀ ମହମୁଦୁଜ୍ଜାର

ଯଦିଓ ମହମୁଦୁଜ୍ଜାର ଚେହେରା ଥିଲା ପଠାନ ପରି ଲମ୍ବା ଓ ଚଉଡ଼ା ତଥାପି ତାଙ୍କ ମୁହଁର ହସଟା ଦେଖି ବୁଝିବାର ଉପାୟ ନଥିଲା ।

ମୁଁ ପ୍ରଥମେ ମହମୁଦଙ୍କୁ ଦେଖିଲି ଦେଓଲି କେମ୍ପ୍ ଜେଲରେ । ସେ ଖୁବ୍ କମ୍ କଥାବାର୍ତ୍ତା କରନ୍ତି । କେବଳ କାମ ସମୟରେ ସେ ମୁହଁ ଖୋଲୁଥିଲେ । ଲେଖିବାର ଶକ୍ତି ଥିଲା କିନ୍ତୁ ଅତି ସଂଯମତାର ସହିତ ସେ ତାକୁ ବ୍ୟବହାର କରୁଥିଲେ । ଦେଓଲି କେମ୍ପ୍‌ରେ ଥିଲାବେଳେ ମୋର ଏମିତି କିଛି ବହିର ଦରକାର ପଡ଼ିଥିଲା ଯାହା ବଡ଼ ବଡ଼ ଗ୍ରନ୍ଥାଗାରରେ ମଧ୍ୟ ମିଳି ନଥିଲା । କିନ୍ତୁ ମହମୁଦ ସେ ସବୁ ବହି ଇତି ମଧ୍ୟରେ ପଢ଼ି ସାରିଥିଲେ ଏବଂ ସେଗୁଡ଼ିକୁ ସେ ମୋ ପାଖକୁ ପଠାଇ ଦେଇଥିଲେ । ସେ ଥିଲେ ଖୁବ୍ ଭଦ୍ର ଓ ଅତ୍ୟନ୍ତ ମିଷ୍ଟାଳାପୀ ।

ସେ ଅବଶ୍ୟ ନିଜେ କମ୍ୟୁନିଷ୍ଟ୍ ଥିଲେ । କିନ୍ତୁ କମ୍ୟୁନିଷ୍ଟ୍‌ମାନଙ୍କୁ ଦେଖିଲେ ଯେମିତି ରୁକ୍ଷ ଓ କଠୋର ମନେ ହୁଅନ୍ତି, ସେ ସେମିତି ମନେ ହୁଅନ୍ତି ନାହିଁ । ତେଣୁ କମ୍ୟୁନିଷ୍ଟ୍‌ମାନେ ଯଦି ତାଙ୍କ ପରି ମଧୁର ସ୍ୱଭାବର ହୁଅନ୍ତି ତେବେ ଅନ୍ୟମାନେ କେମିତି ହେବେ ?

କିଛି ଦିନ ପର୍ଯ୍ୟନ୍ତ ସେ ଜବାହରଲାଲ ନେହେରୁଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ଥିଲେ । ମାନ ସମ୍ମାନ ଓ ପ୍ରଚୁର ଧନ ସମ୍ପତ୍ତିରେ ତାଙ୍କର କେବେବି ଲୋଭ ନଥିଲା । ସେ ତାଙ୍କର ଆଦର୍ଶ ଓ ସିଦ୍ଧାନ୍ତ ଦୁଇଟି ସହିତ କେବେବି ସାଲିସ୍ କରିନାହାନ୍ତି ।' (ଜିନକା ମୈଁ କୃତଜ୍ଞ, ପୃ - ୨୩୭-୩୮) ।



# ପଣ୍ଡିତ ବରାନ୍ନିକୋଭ

'ଭାରତୀୟମାନେ ଆଲେକ୍ସି ପେଟ୍ରୋଭିଚ ବରାନ୍ନିକୋଭଙ୍କୁ ଖୁବ୍ ବେଶୀ ଜାଣି ନାହାନ୍ତି, ଅନ୍ତତଃ ଯେତିକି ତାଙ୍କୁ ଜାଣିବା ଦରକାର । ଲ୍ଲୁଲ୍ଲାଲଜୀଙ୍କର 'ପ୍ରେମ୍ ସାଗର' ତୁଳସୀ ଦାସଙ୍କ 'ରାମ ଚରିତ ମାନସ'କୁ ସେ ଅତି ସୁନ୍ଦର ଭାବେ ଋଷ ଭାଷାରେ ଅନୁବାଦ କରିଥିଲେ । ତୁଳସୀ ଦାସଙ୍କ ରାମୟଣ ଅନୁବାଦ କରିବାରେ ସେ ତାଙ୍କର ବିଶିଷ୍ଟ ଶିଳ୍ପ କଳାର କେବଳ ପରିଚୟ ଦେଇ ନାହାନ୍ତି, ସେ କବିଙ୍କ ପ୍ରତି ଆନ୍ତରିକ ଶ୍ରଦ୍ଧାର ପରିଚୟ ମଧ୍ୟ ଦେଇଛନ୍ତି । ତୁଳସୀଦାସଙ୍କ ଅମର କାବ୍ୟକୁ ପଦ୍ୟ ଛନ୍ଦରେ ରଚନା କରିବା ସମୟରେ ଚୌପାହୀ, ଦୋହା ଏବଂ ଅନ୍ୟାନ୍ୟ ଛନ୍ଦ ପ୍ରୟୋଗର ଚେଷ୍ଟା ମଧ୍ୟ ସେ କରିଚନ୍ତି । ଯେତେବେଳେ ଏହି ବହିଟି ପ୍ରେସ୍‌ରେ ଥିଲା ଏବଂ ତା ପାଇଁ ଚିତ୍ର ନିର୍ବାଚନର କାମ ଚାଲୁଥିଲା ସେତେବେଳେ ଲେଖକ ଲେନିନ ଗ୍ରାଡ୍‌ରେ ଥିଲେ । ସେତେବେଳେ ଏଇ ସବୁ ବିଷୟରେ ତାଙ୍କ ସହିତ ମୋର ଅନେକ ଥର କଥାବାର୍ତ୍ତା ହେଇଥିଲା । ସେତେବେଳେ ଭାରତ ସହିତ ଋଷିଆର ରାଜନୈତିକ ସମ୍ପର୍କ ସ୍ଥାପିତ ହେଇ ନଥିଲା । ଏଥି ପାଇଁ ସେ କାମରେ ତାଙ୍କୁ ଖୁବ୍ ବେଶୀ ସାହାଯ୍ୟ କରାଯାଇ ପାରିଲା ନାହିଁ । ଯେତେବେଳେ ରାମାୟଣର ଗୋଟାଏ ଦି'ଟା ସଚିତ୍ର ବହି ବିଷୟରେ ବରାନ୍ନିକୋଭ ଜାଣିବାକୁ ପାଇଲେ ସେତେବେଳେ ସେଗୁଡ଼ିକୁ ସେ ସଂଗ୍ରହ କରିବାକୁ ଚେଷ୍ଟା କଲେ । ଏ ବିଷୟରେ କାଶୀର 'ନଗରୀ ପ୍ରଚାରଣୀ ସଭା' ତାଙ୍କୁ ଅନେକ ସାହାଯ୍ୟ କରିଥିଲେ ଯୋଉଥି ପାଇଁ ସେ ସେମାନଙ୍କ ଠାରେ ଖୁବ କୃତଜ୍ଞ ଥିଲେ । ସେ ଥିଲେ ପ୍ରସିଦ୍ଧ ଭାଷାବିତ୍ । ଏବଂ ସେ ହିଁ ମୋତେ କହିଥିଲେ ଯେ 'ସୀଗାନ' (ଜୀପସୀ) ଯେ ରୋମନି-ଡୋମନି ଭାଷା ବ୍ୟବହାର କରନ୍ତି, ସେ ଭାରତରୁ ହିଁ ଆସିଥିଲା ।' (ଅତୀତରୁ ବର୍ତ୍ତମାନ ପୃ.୯୮-୧୦୨) ।



# ନେପାଳୀ ମହାକବି ଦେଓକୋଟା

'୧୯୫୩ ମସିହାରେ ମୁଁ ପଞ୍ଚମ ଥର ନେପାଳ ଯାଇଥିଲି । ସେଠାରେ ମୋତେ 'ବିଦେଶୀ ଅତିଥି ଭାବରେ ସ୍ୱାଗତ କରାଯାଇଥିଲା । କିନ୍ତୁ ସେ ସ୍ଥାନଟିକୁ ମୁଁ କେବେବି ବିଦେଶୀ ବୋଲି ମନେ କରେନି । ହିମାଚଳର ବରପୁତ୍ର ପନ୍ତ ମୋର ବଂଧୁ । ତାଙ୍କର ଦ୍ୱିତୀୟ ପୁତ୍ର ମହାକବି ଲକ୍ଷ୍ମୀପ୍ରସାଦ ଦେଓକୋଟା । ମହାକବି ଦେଓକୋଟାଙ୍କ ଭିତରେ ନେପାଳର ପନ୍ତ-ପ୍ରସାଦ ନିରାଲାଙ୍କ ପୂର୍ଣ୍ଣ ରୂପ ପ୍ରକାଶ ପାଇଥାଏ । 'ନିରାଲା'ଙ୍କ କିଛି ଗୁଣ ତାଙ୍କ ଭିତରେ ଅବଶ୍ୟ ଥିଲା, କିନ୍ତୁ ସବୁ ନୁହେଁ । ଅସାଧାରଣ ପ୍ରତିଭା ଯେ ବେଳେବେଳେ ପାଗଳାମି ବୋଲି ପ୍ରତୀୟମାନ ହେଇପାରେ ସେ କଥା ଦେଓକୋଟାଙ୍କ ଠାରେ ବିଶେଷ ଭାବେ ପ୍ରଯୁଜ୍ୟ । ସେ ନେପାଳୀ ଓ ଇଂରେଜୀ ଭାଷାରେ ମାତ୍ର ୪୪ ବର୍ଷ ବୟସ ଭିତରେ ମୋଟ୍ ୫୫ ଖଣ୍ଡ ବହି ରଚନା କରିଛନ୍ତି । ଅଥଚ ତା ଭିତରୁ ୨୬ ଖଣ୍ଡ ହଜି ଯାଇଚି କିମ୍ବା ଛିଣ୍ଡି ଯାଇଚି । ୧୯୩୪ ମସିହାରେ ତାଙ୍କର 'ଗରିବ' ଶିରୋନାମାରେ ପ୍ରଥମ କବିତା ପ୍ରକାଶିତ ହୋଇଥିଲା । ସେହି ବର୍ଷ ମଧ୍ୟ ସେ 'ସୁନା-ମଦନ' ନାଁରେ ଖଣ୍ଡକାବ୍ୟ ରଚନା କରିଥିଲେ । ଏହି ଖଣ୍ଡ କାବ୍ୟରେ ପ୍ରାକୃତିକ ଦୃଶ୍ୟ ସମୂହର ଓ ନାୟକର ତିବ୍‌ବତ ଯାତ୍ରାର ଚମତ୍କାର ବର୍ଣ୍ଣନା ରହିଚି । କବିତା ବ୍ୟତୀତ ସେ ନାଟକ, ଗଳ୍ପ ଓ ପ୍ରବନ୍ଧ ମଧ୍ୟ ଲେଖିଚନ୍ତି । ସେ ଥିଲେ ଭାଷାର ଯାଦୁକର । ନୂଆ ନୂଆ ଶବ୍ଦ ପ୍ରୟୋଗ ଫଳରେ ତାଙ୍କ ଭାଷା ମଧ୍ୟ ସମୃଦ୍ଧ ହେଇଚି ।' (ଅତୀତ ସେ ବର୍ତ୍ତମାନ, ପୃ ୧୦୫-୧୧୮)

'୧୯୧୫ ମସିହାରେ ମୁଁ ଆଗ୍ରାରେ ଥିଲି । ସେଠି ମୁଁ ଥିଲି ଉପଦେଷ୍ଟା । ସେଠାରେ

ଗୋଟିଏ ଉର୍ଦ୍ଦୁ ପତ୍ରିକା ପ୍ରକାଶ ପାଉଥିଲା । ସେଥିରେ 'ଖଣ୍ଡନ ମଣ୍ଡନ' ନାଁରେ ଆର୍ଯ୍ୟ ସମାଜ ବିଷୟରେ ମୋତେ ଲେଖିବାକୁ କୁହାଯାଇଥିଲା । ଅବଶ୍ୟ ତାର ଅଧେ ଥିଲା ଭ୍ରମଣର ବର୍ଣ୍ଣନା । ଠିକ୍ ଗୋଟାଏ ଭ୍ରମଣ କାହାଣୀ ପରି । ପରେ ସେ ଲେଖାଟି ମୁଁ ଆଉ ପାଇଲିନି । ୧୯୨୧ ମସିହାରେ ମୁଁ ଅସହଯୋଗ ଆନ୍ଦୋଳନ ଏବଂ ସକ୍ରୀୟ ରାଜନୀତିରେ ଯୋଗ ଦେଲି । ୧୯୨୧ ମସିହାର ଶେଷ ଆଡ଼କୁ ମୋତେ ଛ ମାସ ପାଇଁ ଜେଲ୍ ଯିବାକୁ ପଡ଼ିଲା । ୧୯୧୮-୧୯ ମସିହାରେ ଋଷ ବିପ୍ଳବର ଯୋଉ ଖବର ସବୁ ପ୍ରକାଶ ପାଉଥିଲା ମୁଁ ତା ସହିତ ମୋ କଳ୍ପନାର ରଂଗ ଦେଇ ଗୋଟିଏ ନୂଆ ସାମ୍ୟବାଦୀ ପୃଥିବୀର ଚିତ୍ର ଆଙ୍କୁଥିଲି ଏବଂ ସେଇ ପୃଥିବୀକୁ କାଗଜ କଲମରେ ଧରିରଖିବାକୁ ଚାହୁଁଥିଲି । ଏଇ ଭାବରେ ସଂସ୍କୃତ ପଦ୍ୟ ଛନ୍ଦ ରଚନା ଆରମ୍ଭ କଲି.... ବକ୍ସାର ଜେଲରେ ଥିଲାବେଳେ ଏଇ କଥାଟିକୁ ମୁଁ ସଂସ୍କୃତରେ ପାଞ୍ଚ ସର୍ଗ ଯାଏ ରଚନା କଲି ଓ ପରେ ତାହା ଠିକ୍ ହେଲା ନାହିଁ ଭାବି 'ବାଇଶବିଂ ସଦୀ' ଲେଖିଲି । ଜେଲରେ ମୁଁ ଚାରି ଖଣ୍ଡ ଇଂରାଜୀ ଉପନ୍ୟାସର ଭାବାନୁବାଦ କରିଥିଲି । ......... ୧୯୩୪ ମସିହାରେ କିଛି ବାସ୍ତବ ଘଟଣାର ଅବଲମ୍ବନରେ ଗଳ୍ପ ଲେଖିବାର ଇଚ୍ଛା ହୁଏ ଏବଂ ତା ପରେ ଗୋଟିକ ପରେ ଗୋଟିଏ ଗଳ୍ପ ଲେଖିବା ଆରମ୍ଭ କଲି । ସେଗୁଡ଼ିକ 'ସତମୀ କେ ବଚ୍ଚେ' ନାମକ ବହିରେ ସଂକଳିତ ହେଇଚି । ... ୧୯୩୮ରେ ମୁଁ "ଜିନେ କେଲିଏ" ନାମକ ମୋର ପ୍ରଥମ ଉପନ୍ୟାସ ରଚନା କଲି । ୧୯୪୧ ବା ୪୨ରେ ଶ୍ରୀ ଭଗବତୀ ଶରଣ ଉପାଧ୍ୟାୟଙ୍କର କିଛି ଐତିହାସିକ କାହାଣୀ ମୁଁ ପଢ଼ିଥିଲି । ୧୯୪୨ ମସିହାରେ ହାଜାରିବାଗ ଜେଲରେ ମୁଁ ମୋର 'ଭଲଗା ସେ ଗଂଗା'ର କୋଡ଼ିଏଟି ଗଳ୍ପ ଲେଖିଥିଲି ।

ମୁଁ ମୋର ସମସ୍ତ ରଚନା ଭିତରୁ କୋଉଟା ଶ୍ରେଷ୍ଠ ସେ କଥା କହିବା ମୁସ୍କିଲ୍ । 'ଭଲଗା ସେ ଗଂଗା' ପୁସ୍ତକର ଗୋଟିଏ ଗଳ୍ପ 'ପ୍ରଭା'କୁ ପାଠକମାନେ ଶ୍ରେଷ୍ଠ ବୋଲି କହିବାର ମୁଁ ଶୁଣିଚି ଏବଂ ଏମିତି ଶୁଣି ମୋର ମଧ୍ୟ ବିଶ୍ୱାସ ହେଇଯାଇଥିଲା । ନଚେତ୍ ଏହି ସଂକଳନରେ ଥିବା 'ନାଗଦତ୍ତ', 'ପ୍ରଭା' ଓ 'ସୁରେୟା' ଏହି ତିନୋଟି ଗଳ୍ପ ଭିତରେ ବିଶେଷ କିଛି ପାର୍ଥକ୍ୟ ନାହିଁ ବୋଲି ମୋର ମନେ ହୁଏ । (ରାହୁଲ ନିବନ୍ଧାବଳୀ, ପୃ.୩-୫) ।

ବିସ୍ତୃତଃ 'ଭଲଗା ସେ ଗଙ୍ଗା' କଥା ସାହିତ୍ୟ କ୍ଷେତ୍ରକୁ ରାହୁଳଙ୍କ ଶ୍ରେଷ୍ଠ ଦାନ । ପ୍ରଗତିଶୀଳ ହିନ୍ଦୀ ସାହିତ୍ୟରେ ଗୋଟିଏ ଜୟସ୍ତମ୍ଭ ପରି । ପ୍ରାଚୀନ ପନ୍ଥୀ ଓ ପୁନରୁତ୍‌ଥାନବାଦୀ ସମାଲୋଚକମାନେ ତାଙ୍କର ଏ କାହାଣୀକୁ ବିରୋଧ କରୁଥିଲେ ।

ଏଠାରେ ଏହି ବହିର ବିଶେଷ ଆଲୋଚନା ଆବଶ୍ୟକ । ମୂଳତଃ ଏଇଟା ଗୋଟାଏ ଐତିହାସିକ ଗ୍ରନ୍ଥ ଯାହା ଗଳ୍ପ ଆକାରରେ ଲେଖା ହେଇଚି । ପ୍ରଥମ ସଂସ୍କରଣର ଭୂମିକାରେ ୧୯୪୨ ମସିହା ଜୁନ ୨୬ ତାରିଖରେ ସେ ଲେଖିଛନ୍ତି, ମଣିଷ ଆଜି ଯୋଉଠି ଆସି ପହଞ୍ଚିଚି, ପ୍ରଥମରେ ସେ ସେଠି ନ ଥିଲା । ଏଥିପାଇଁ ତାକୁ ଯଥେଷ୍ଟ ସଂଘର୍ଷ କରିବାକୁ ପଡ଼ିଚି । ମଣିଷ ସମାଜର ପ୍ରଗତିର ଆଦର୍ଶ ବିଷୟରେ ମୁଁ ମୋର ମତାମତ 'ମାନବ ସମାଜ' ଗ୍ରନ୍ଥରେ ଲେଖିଛି । ଖୁବ୍ ସହଜରେ ତାକୁ ବୁଝେଇବା ପାଇଁ ମୁଁ 'ଭଲଗା ସେ ଗଂଗା' ଲେଖିଥିଲି । ସେଥିରେ ଇଣ୍ଡୋ - ଇଉରୋପୀୟମାନଙ୍କୁ ନେଇ ଲେଖିଥିଲି ଯାହା ଭାରତରେ ପାଠକମାନଙ୍କ ପାଇଁ ବୁଝିବାରେ ସହଜ ହେବ । ମିଶର, ଆସାରୀ ବା ସିନ୍ଧୁ ଜାତିର ପ୍ରଗତି ହିନ୍ଦୁ ଓ ଇଉରୋପୀୟମାନଙ୍କ ହଜାର ହଜାର ବର୍ଷ ଆଗରୁ ହୋଇଥିଲା । ତେଣୁ ଏମାନଙ୍କ ବିଷୟରେ ଲେଖିଲେ ପାଠକ ଓ ଲେଖକ ଉଭୟ ଅସୁବିଧାରେ ପଡୁଥିଲେ ।

ପ୍ରତ୍ୟେକ ସମୟର ସମାଜକୁ ପ୍ରାମାଣିକ ଭାବେ ଲେଖିବାର ଚେଷ୍ଟା କରିଚି । କିନ୍ତୁ ପ୍ରଥମ ଚେଷ୍ଟାରେ ଭୁଲ ରହିବା ସ୍ୱାଭାବିକ । ଅବଶ୍ୟ ମୋର ଏ ଚେଷ୍ଟା ପରେ ଯଦି ଅନ୍ୟ ଲେଖକମାନେ ଆହୁରି ଶୁଦ୍ଧ ଭାବରେ ତାକୁ ଲେଖନ୍ତି ତେବେ ମୁଁ କୃତାର୍ଥ ହେବି ।

'ବନ୍ଧୁଲ ମଲ୍ଲ' (ବୁଦ୍ଧ)ର ସମୟକୁ ନେଇ ମୁଁ ସ୍ୱତନ୍ତ୍ର ଉପନ୍ୟାସ 'ସିଂହ ସେନାପରି' ରଚନା କରିଚି ।

ଏହି ଉପନ୍ୟସରେ ଭାରତର ଆଠ ହଜାର ବର୍ଷର ଅଜ୍ଞାତ ଅନ୍ଧକାରମୟ ପ୍ରାଚୀନ କାଳଠାରୁ ଆରମ୍ଭ କରି ୧୯୪୨ ମସିହା ପର୍ଯ୍ୟନ୍ତ ସମୟର ଗୋଟିଏ ଚିତ୍ର ଦେଇଚି । ପ୍ରଥମ ଚାରିଟି ଗଳ୍ପ ପ୍ରାଗୈତିହାସିକ କାଳର ଅବଲମ୍ବନରେ ଲେଖାଯାଇଚି । ସେଗୁଡ଼ିକ ହେଲା 'ନିଶା', 'ଦିବା', 'ଅମୃତସ୍ୟ' ଓ ପୁରୁହୁତ । ଏଗୁଡ଼ିକ ଖ୍ରୀଷ୍ଟପୂର୍ବ ୬୦୦୦ ଠାରୁ ୨୬୦୦ ପର୍ଯ୍ୟନ୍ତ ସମୟର କାହାଣୀ । ଭଦନ୍ତ ଆନନ୍ଦ କୌଶଲ୍ୟାୟନ ଏହି ପୁସ୍ତକର ପ୍ରଶଂସା କରି ଲେଖିଚନ୍ତି 'ଯଦିଓ ଏହି କାହାଣୀ ଗୁଡ଼ିକରେ କଳ୍ପନାର ଆଶ୍ରୟ ନିଆ ହେଇଚି ତଥାପି ତାକୁ ନିଛକ କଳ୍ପନା କହି ହେବ ନାହିଁ । ଏ କାହାଣୀ ଗୁଡ଼ିକର ବୈଶିଷ୍ଟ୍ୟ ହେଲା - ରାହୁଲ ଯେ ଇଣ୍ଡୋ-ଇଉରୋପୀୟ ଓ ଭାରତ-ଇରାନୀ ଶବ୍ଦ-ଶାସ୍ତ୍ର ଓଐତିହାସିକ ଭାଷା ବିଜ୍ଞାନ ଅନୁଶୀଳନ କରିଛନ୍ତି ଏହା ତାର ପ୍ରମାଣ ।'

ରାହୁଲ ଏଥିରେ ଜଂଗଲର ପ୍ରାକୃତିକ ପରିବେଶରେ ବସବାସ କରୁଥିବା ଆଦିମ ମଣିଷ ଠାରୁ ଆରମ୍ଭ କରି ମଣିଷର ପଶୁପାଳନ ଓ କୃଷି ସଭ୍ୟତା ପର୍ଯ୍ୟନ୍ତ ବର୍ଣ୍ଣନା

କରିଛନ୍ତି । ଯେତେବେଳେ ପିତୃଶାସିତ ସମାଜ ଥିଲା ସେତେବେଳେ ଦାସ ପ୍ରଥା ମଧ୍ୟ ଥିଲା । ଏବଂ ସେତେବେଳେ ସମାଜର ନୀତିବାଦୀ ବଡ଼ପଣ୍ଡାମାନେ ଏହି ପ୍ରଥାକୁ ସ୍ଥାୟୀ କରିବାକୁ ଯଥେଷ୍ଟ ଇନ୍ଧନ ଯୋଗାଇ ଆସିଚନ୍ତି ।

ରାହୁଳ ବେଦ, ବ୍ରାହ୍ମଣ, ମହାଭାରତ, ପୁରାଣ, ବୌଦ୍ଧ 'ଅଟକଥା'ରୁ ଉଦାହରଣ ଦେଇ ଏହି ଇତିହାସର ବସ୍ତୁବାଦୀ ସତ୍ୟତାକୁ ସମର୍ଥନ କରିଛନ୍ତି ।

'ସୁଦାସ'ର କାହାଣୀକୁ ସେ ନେଇଥିଲେ ଋକ୍‌ବେଦରୁ । ଏବଂ ବୌଦ୍ଧ କଥା ଅବଲମ୍ବନରେ ସେ ରଚନା କରିଛନ୍ତି 'ବନ୍ଧୁଳ ମଲ୍ଲ' । କୌଟିଲ୍ୟର 'ଅର୍ଥଶାସ୍ତ୍ର' ଓ କାଶୀ ପ୍ରସାଦ ଜୟସ୍ୱାଲଙ୍କ 'ହିନ୍ଦୁ ପଲିଟି' ଅବଲମ୍ବନରେ 'ନାଗଦତ୍ତ', ଅଶ୍ୱଘୋଷଙ୍କ 'ବୁଦ୍ଧ ଚରିତ' ଏବଂ 'ସୌନ୍ଦରାନନ୍ଦ'କୁ ଭିତ୍ତି କରି ଲେଖିଛନ୍ତି 'ପ୍ରଭା' । ତାର ଐତିହାସିକ ପ୍ରାମାଣିକତା ମିଳେ 'ରିସ୍ ଡ଼େଭିଡ୍' ସାହେବଙ୍କର 'ବୁଦ୍ଧିଷ୍ଟ ଇଣ୍ଡିଆ' ଗ୍ରନ୍ଥରୁ । କାଳିଦାସଙ୍କ କବିତା ଅବଲମ୍ବନରେ 'ସୁପର୍ଣ୍ଣ – ଯୌଧେୟ', ବାଣଭଟ୍ଟଙ୍କ 'ହର୍ଷ ଚରିତ' ଓ 'କାଦମ୍ବରୀ' ଅବଲମ୍ବନରେ 'ଦୁର୍ମୁଖ' ଏବଂ 'ନୈଷଧ' ଅବଲମ୍ବନରେ ଲେଖିଛନ୍ତି 'ଚକ୍ରପାଣି' । ସର୍ବମୋଟ୍ କୋଡ଼ିଏଟି ଭିତରୁ ଚଉଦଟି କାହାଣୀ ସଂସ୍କୃତ ଓ ପାଲୀ ଗ୍ରନ୍ଥରୁ ନିଆଯାଇଛି ।

ଶେଷ ଛଅଟି କାହାଣୀ ମଧ୍ୟ ଯୁଗୀୟ ଏବଂ ଆଧୁନିକ ଭାରତୀୟ ଇତିହାସ ସହିତ ସଂଶ୍ଳିଷ୍ଟ । 'ବାବା ନୁରୁଦ୍ଦୀନ'ର ପରିବେଶ ଆଲ୍ଲାଉଦ୍ଦୀନ ଖିଲଜୀର ରାଜତ୍ୱକାଳ । ଠିକ୍ ସେମିତି 'ସୁରେୟା' ଆକବରଙ୍କ ଉଦାର ମତବାଦକୁ ଭିତ୍ତି କରି ରଚିତ । 'ରେଖା ଭଗତରେ' ବ୍ରିଟିଶ୍ ଅମଳର ଅତ୍ୟାଚାରର କାହାଣୀ ପରିସ୍ଫୁଟ, 'ମଙ୍ଗଳ ସିଂହ' (୧୯୫୭), 'ସଫଦର' (୧୯୨୨) ଏବଂ 'ସୁମେର' (୧୯୪୨) ସେଇ ସମୟର କଠିନ ସାମାଜିକ, ଆର୍ଥିକ ଓ ରାଜନୈତିକ ପରିସ୍ଥିତିକୁ ନେଇ ରଚିତ ଯାହା ରାହୁଳ ନିଜେ ଓ ତାଙ୍କୁ ପୂର୍ବ ବଂଶଧରମାନେ ନିଶ୍ଚୟ ପ୍ରତ୍ୟକ୍ଷ କରିଛନ୍ତି ।

କିନ୍ତୁ ପଣ୍ଡିତମାନେ ଏହି ଗ୍ରନ୍ଥର କଟୁ ସମାଲୋଚନା କରିଥିଲେ । କେହି କେହି କହିଲେ ଏହି ପୁସ୍ତକ ଇତିହାସକୁ ବିକୃତ ରୂପ ଦେଇଛି । ଆଉ କେହି କେହି ତାକୁ ସାହିତ୍ୟ ହିସାବରେ ସ୍ୱୀକାର କରି ନାହାନ୍ତି । ଉଦାହରଣ ସ୍ୱରୂପ –

୧. 'ପୁରୁଧାନ', 'ଅଙ୍ଗିରା'ରେ ଅସୁର ଜାତିର ଯୋଉ ବର୍ଣ୍ଣନା ରହିଚି ତାହା ଡ଼. ଭଗବତୀଶରଣ ଉପାଧ୍ୟାୟଙ୍କ ମତ ଅନୁସାରେ ସିନ୍ଧୁ ନଦୀ ପାଖରେ ଅସୁର ଓ ଦ୍ରାବିଡ଼ ଜାତିର ମିଶ୍ରଣ ।

୨. ବାଲ୍ମୀକି ରାମାୟଣର ରଚନା କାଳ ରାହୁଳ ଶୁଙ୍ଗ ବଂଶ ସମୟରେ ବୋଲି କହିଚନ୍ତି । ଏ ବିଷୟରେ ଡ଼. ରାମ ବିଳାସ ଶର୍ମା ବ୍ୟଙ୍ଗ କରି କହିଥିଲେ - "ଏଇଟା କଅଣ ନୂଆ ସମାଜ ଶାସ୍ତ୍ର । ରାମ କ'ଣ ଶୁଙ୍ଗ ସମ୍ରାଟଙ୍କ ପ୍ରତୀକ, କାଳି ଦାସଙ୍କ 'କୁମାର ସମ୍ଭବ କାବ୍ୟରେ କୁମାର କଅଣ କୁମାର ଗୁପ୍ତଙ୍କ ପ୍ରତୀକ ? ତେବେ ଏବେ ରାହୁଳ ଆମକୁ ଦଶରଥ, କୌଶଲ୍ୟା, ସୀତା ଓ ରାବଣର ଐତିହାସିକ ପରିଚୟ କ'ଣ ସେ କଥା ଆମକୁ କୁହନ୍ତୁ ।" ଡ଼. ରାମ ବିଳାସ ଶର୍ମା ତାଙ୍କର ବାମପନ୍ଥୀ ଦୃଷ୍ଟିଭଙ୍ଗୀର ବିଚାରରେ କେବଳ ରାହୁଳଙ୍କୁ ନୁହେଁ, ହାଜାରୀ ପ୍ରସାଦ ଦ୍ୱିବେଦୀଙ୍କୁ ମଧ୍ୟ 'ବ୍ରାହ୍ମଣ' ସଂକୀର୍ଣ୍ଣତାବାଦୀ ଏବଂ ପୁନରୁତ୍‌ଥାନବାଦୀ ବୋଲି କହିବାକୁ ଛାଡ଼ି ନାହାଁନ୍ତି ।

୩. 'ସୁପର୍ଣ୍ଣ - ଯୌଧେୟ' ଗ୍ରନ୍ଥରେ ରାହୁଳ କହିଛନ୍ତି, ହୁଣ ବିଜେତା ସମ୍ରାଟ ସମୁଦ୍ରଗୁପ୍ତ । କିନ୍ତୁ ପ୍ରକୃତରେ ସେ ସ୍କନ୍ଧଗୁପ୍ତ ।

୪. ଦୁର୍ମୁଖ ପୁସ୍ତକରେ ରାହୁଳ ହର୍ଷବର୍ଦ୍ଧନଙ୍କ ଭାଇ ରାଜ୍ୟ ବର୍ଦ୍ଧନଙ୍କୁ କାଣ୍ୟକୁବଜାଧିପତି ବୋଲି କହିଛନ୍ତି । ଅଥଚ ସେ ଥିଲେ ସ୍ଥାନେଶ୍ୱରର (ଆଧୁନିକ ଥାନେସର) ଶାସକ ।

୫. ଜୟଚନ୍ଦ୍ରଙ୍କ ଚିତ୍ର ସେ କାହାଣୀରେ ଯେମିତି ଭାବେ ଚିତ୍ରିତ କରିଛନ୍ତି ତାହା ମୂଳ ଐତିହାସିକ ଚିତ୍ର ସହିତ ଠିକ୍ ଭାବେ ମିଶେ ନାହିଁ । ମୁସଲମାନ ଐତିହାସିକମାନେ ତାଙ୍କୁ ଯୋଦ୍ଧା କହିଛନ୍ତି । ଅଥଚ ରାହୁଳ ତାଙ୍କୁ କହିଚନ୍ତି ଲମ୍ପଟ ଓ ବିଳାସୀ ।

୬. 'ସୁରେୟା' ପୁସ୍ତକର ନାୟିକାକୁ ସେ ଆବୁଲ ଫାଜଲଙ୍କ କନ୍ୟା ବୋଲି କହିଛନ୍ତି ଯାହା ସହିତ ତୋଡ଼ର ମଲ୍ଲଙ୍କୁ ପୁତ୍ର କମଲ ସହିତ ବିବାହ ହୋଇଛି ଏବଂ ଏ ଦୁଇଜଣ ଇଉରୋପ ଯାତ୍ରା କରିଛନ୍ତି - କିନ୍ତୁ ଏ କାହାଣୀ ଇତିହାସରେ ନାହିଁ । କିନ୍ତୁ ଏଇ ସବୁ ଦୋଷ ତ୍ରୁଟି ସତ୍ତ୍ୱେ ଏ ବିହିଟି ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ । ଏହାର ପରିକଳ୍ପନା ମଧ୍ୟ ସମ୍ପୂର୍ଣ୍ଣ ନୂଆ ।

ଆଠ ହଜାର ବର୍ଷର ଇତିହାସକୁ ଏହି ବହିରେ ଯେପରି ଭାବରେ ସନ୍ନିବେଶିତ କରାଯାଇଚି ଯେମିତି ମନେ ହେଉଚି ଗୋଟାଏ କଳସୀ ଭିତରେ ସମୁଦ୍ର । ଏହି ବହିରେ ଲେଖକଙ୍କର ଏକ ସଂଗେ ଉଭୟ ସମାଲୋଚନା ଓ ସୃଜନୀମୂଳକ ଦୃଷ୍ଟିଭଙ୍ଗୀ ଦେଖିବାକୁ ମିଳେ ।

ଏହି ବହି ଯଥେଷ୍ଟ ଆଲୋଡ଼ନ ସୃଷ୍ଟି କରିଥିଲା । କିନ୍ତୁ ଜନୈକ ସ୍ୱାମୀଜୀ 'ବିଶ୍ୱବଂଧୁ' ପତ୍ରିକାରେ ରାହୁଳଙ୍କୁ 'ନଗ୍ନବାଦୀ ବେଦ ନିନ୍ଦୁକ ରାହୁଳ' ବୋଲି ନିନ୍ଦା କରିଛନ୍ତି ।

ତଥାପି ବହିଟା ଏତେ ଲୋକପ୍ରିୟ ହୋଇଥିଲା ଯେ ସ୍ୱାଧୀନତା ପୂର୍ବରୁ ଗର୍କୀଙ୍କ 'ମା' ଉପନ୍ୟାସ ପରି ସବୁ ଭାରତୀୟ ଭାଷାରେ ଅନୂଦିତ ହୋଇଥିଲା । ଏପରିକି ଅନେକ ସଂସ୍କରଣ ମଧ୍ୟ ହୋଇଥିଲା । ଇଂରାଜୀ, ଋଷ, ଚେକ, ପୋଲିସ ଏବଂ ଅନ୍ୟାନ୍ୟ ବିଦେଶୀ ଭାଷାରେ ଅନୁବାଦଗୁଡ଼ିକ ବିଶେଷ ଭାବେ ଜନପ୍ରିୟ ହୋଇଥିଲା । ରାହୁଳଙ୍କ ସମସ୍ତ ରଚନା ଭିତରେ ଏହି ପୁସ୍ତକ କେବଳ ହିନ୍ଦୀ ନୁହେଁ ସବୁ ଭାରତୀୟ ଭାଷାରେ ଗୋଟିଏ ବିଶିଷ୍ଟ ଅବଦାନ ।

ପ୍ରେମଚନ୍ଦଙ୍କ ସମ୍ପର୍କରେ ରାହୁଳ ଲେଖିଛନ୍ତି ୧୯୧୫ ମସିହାରେ ('ଜମାନା' ମାସିକ ପତ୍ରିକାରେ) ପ୍ରେମଚନ୍ଦଙ୍କ ନାମ ଓ ରଚନା ସହିତ ମୋର ପ୍ରଥମ ପରିଚୟ ହୁଏ । କିନ୍ତୁ ତାଙ୍କୁ ଦେଖିବାର ସୁଯୋଗ ମିଳେ ଅନେକ ପରେ। କିନ୍ତୁ ତାଙ୍କର ଶିଳ୍ପ ଶୈଳୀକୁ ତାଙ୍କ ସମସାମୟିକ ହିନ୍ଦୀ ଓ ଉର୍ଦ୍ଦୁ ଆଲୋଚକମାନେ ତ୍ରୁଟିପୂର୍ଣ୍ଣ ବୋଲି କହନ୍ତି । ପ୍ରେମଚନ୍ଦଙ୍କ ଜୀବନୀ ଯେମିତି ସହଜ ଓ ଅନାଡ଼ମ୍ବର ଥିଲା ସେ ତାଙ୍କର ଲେଖନୀକୁ ସେମିତି କେବେ କୃତ୍ରିମ ଅଳଂକାରରେ ସଜ୍ଜିତ କରିବାକୁ ଚାହିଁ ନାହାନ୍ତି ।  ତାଙ୍କ ଲେଖନୀ ଥିଲା ମଣିଷର କଲ୍ୟାଣ ପାଇଁ । ୧୯୨୧ ମସିହାରେ ଛପରା ଜେଲକୁ ଆସି ଦିନେ ଦୁଇଦିନ ପାଇଁ ମୋତେ ସେଠାକାର ରେବତୀଆ ଗାଁରେ ରହିବାକୁ ହେଇଥିଲା । ସେଠାରେ ପ୍ରେମଚନ୍ଦଙ୍କ ସହିତ ମୋର ଦ୍ୱିତୀୟ ସାକ୍ଷାତ ହୁଏ । ତା ପରେ ଆଉ ତାଙ୍କ ସହିତ ଦେଖା ହେଇନି । କେବଳ ତାଙ୍କ କୃତିତ୍ୱ ମୋତେ ଆକୃଷ୍ଟ କରିଛି । ଯେମିତିକି ଗାଁରେ ପ୍ରେମଚନ୍ଦଙ୍କୁ ଦେଖି ବୁଝି ପାରିଥିଲି ଯେ ସେ ତାଙ୍କର ହିନ୍ଦୀ ପାଠକମାନଙ୍କୁ ଗୋଟାଏ ନୂଆ ତଥା ଉଚ୍ଚ ଆଦର୍ଶ ଦ୍ୱାରା ଆକର୍ଷିତ କରି ରଖିପାରିଛନ୍ତି ।

୧୯୨୦ରୁ ୧୯୩୦ ମସିହା ପର୍ଯ୍ୟନ୍ତ, ଦଶ ବର୍ଷ ଭିତରେ ପ୍ରେମଚନ୍ଦ ଏକୁଟିଆ ଜାତୀୟ ଜୀବନରେ ରାଜନୈତିକ ଜାଗରଣ ଓ ଉଚ୍ଚ ଆଦର୍ଶର ପ୍ରସାର ପାଇଁ ଯୋଉ କାମ କରିଥିଲେ ତାହା ବହୁ ଲେଖକ ଯୌଥ ଭାବରେ ମଧ୍ୟ କରି ପାରି ନ ଥାଆନ୍ତେ ।'

'ବୋଧହୁଏ ୧୯୨୬ ମସିହାରେ ବନାରସରେ ତାଙ୍କ ସହିତ ମୋର ସାକ୍ଷାତ ହୁଏ । ମୋ ସାମନାରେ ପ୍ରେମଚନ୍ଦଙ୍କ ରଚନାର ଭାଷା ବିଷୟରେ ଜଣେ ଖ୍ୟାତନାମା ଉର୍ଦ୍ଦୁ ଲେଖକ ଓ କବି ଆକ୍ଷେପ କରି କହିଥିଲେ ପ୍ରେମଚନ୍ଦ ଉର୍ଦ୍ଦୁ ଜାଣି ନାହାନ୍ତି । ସେ ପୂର୍ବ ଅଞ୍ଚଳର ଭାଷାରେ ହିଁ ବେଶୀ ରଚନା କରିଛନ୍ତି । ମୁଁ ଜାଣିଥିଲି ଏହି ଉର୍ଦ୍ଦୁ ଲେଖକ ଥିଲେ ଲକ୍ଷ୍ନୌର ନବାବ ବଂଶର ଲୋକ ଏବଂ ସେ ନିଜକୁ ଭାବୁଥିଲେ ଗୋଟିକିଆ ଟହମ ଗଛ

ପରି ଅଛନ୍ତି । ମନେ ହେଲା ସେ ନିଜେ ଯଦି ଗଳ୍ପ/ଉପନ୍ୟାସ ଲେଖୁ ଥାଆନ୍ତେ, ଭାଗ୍ୟଭଲ ସେ ଲେଖି ନାହାନ୍ତି, ତା ହେଲେ ହରି ମୁହଁରେ ('ଗୋଦନ'ର ନାୟକ) କଥାଗୁଡ଼ିକ ନିଜ ପରି ଆରବୀ ଭାଷା ଭର୍ତ୍ତି କରି କୁହାଇ ଥାଆନ୍ତେ ।'

'କିଛି ହିନ୍ଦୀ ସାହିତ୍ୟିକ କହିଛନ୍ତି ପ୍ରେମଚନ୍ଦଙ୍କ ଭାଷାରେ କୌଣସି ଗଭୀରତା ନାହିଁ । ପ୍ରେମଚନ୍ଦଙ୍କ ଆଗରୁ ଅବଶ୍ୟ କିଛି ହିନ୍ଦୀ ଉପନ୍ୟାସ ରଚିତ ହୋଇଛି କିନ୍ତୁ ତାକୁ ବିଶ୍ୱ ସାହିତ୍ୟ ସହିତ ତୁଳନା କରି ହେବ ନାହିଁ । ତେବେ ପ୍ରେମଚନ୍ଦ ହିଁ ପ୍ରଥମେ ଏ ବିଷୟରେ ଚେଷ୍ଟା କରିଥିଲେ ।'

'ଶେଷରେ ପ୍ରେମଚନ୍ଦଙ୍କ ସହିତ ମୋର ସାରନାଥରେ ଦେଖା ହୋଇଥିଲା । ଦିନେ ପ୍ରେମଚନ୍ଦ ଆସିଲେ । ତାଙ୍କ ଗାଁ ଥିଲା ସାରନାଥଠାରୁ ଏକ ଦେଢ଼ ମାଇଲ ଭିତରେ । ସେଠାରେ ମୁଁ ଗୋଟାଏ ଭଂଗା ମୂର୍ତ୍ତିର ମସ୍ତକ ଖୋଜି ପାଇଥିଲି । ସେଇଟା ଅବଶ୍ୟ କୌଣସି ଦେବତାର ମୂର୍ତ୍ତି ନ ଥିଲା । ପ୍ରାକ୍ ଇସଲାମ ବା ଆଦି ଇସଲାମ ଯୁଗର କୌଣସି କାୟସ୍ଥ ବଂଶୀୟ ପୁରୁଷର ମୂର୍ତ୍ତି ଥିଲା । ସେ ମସ୍ତକର କେଶ ବିନ୍ୟାସ ଏବଂ ଗ୍ରାମ୍ୟ କାୟସ୍ତଙ୍କର ଅନ୍ୟାନ୍ୟ ବୈଶିଷ୍ଟ୍ୟଗୁଡ଼ିକ ସେ ମୂର୍ତ୍ତିରେ ଥିଲା । ମୂର୍ତ୍ତିଟିକୁ ପଠାଇ ଦେଇଥିଲି ପ୍ରୟାଗ ମିଉଜିଅମକୁ ।

'ସେ ଆସି ଖଣ୍ଡିଏ ଚଟ ଉପରେ ବସି ମୋ ସହିତ କଥାବାର୍ତ୍ତା କଲେ । କିନ୍ତୁ ସେତେବେଳେ ମୁଁ ଭାବି ପାରି ନଥିଲି ଯେ ସେଇଟା ମୋର ତାଙ୍କ ସହିତ ଶେଷ ଦେଖା । ତା ପରେ ମୁଁ ଯେତେବେଳେ ତିବ୍‌ବତକୁ ଚାଲିଯାଏଁ ସେତେବେଳେ ତାଙ୍କର ମୃତ୍ୟୁ ଖବର ମୁଁ ପାଇଲି ।

'ପ୍ରେମଚନ୍ଦ ଭାରତର ଅମର କଥାଶିଳ୍ପୀ ଓ ଲେଖକ । ଶତାବ୍ଦୀ ପରେ ଶତାବ୍ଦୀ ଆସିବ, କିନ୍ତୁ ପ୍ରେମଚନ୍ଦଙ୍କ ଉପନ୍ୟାସ ବଞ୍ଚି ରହିବ କାଳକାଳକୁ ।' (ରାହୁଲ ନିବନ୍ଧବଳୀ ପୃ-୭୯)

ଦୁଇ ଖଣ୍ଡରେ ପ୍ରକାଶିତ 'ମଧ୍ୟ ଏସିଆ କେ ଇତିହାସ' ପୁସ୍ତକଟି ଭାରତୀୟ ଷଡ଼ ଦର୍ଶନ ଓ ଅନ୍ୟାନ୍ୟ ଦର୍ଶନର ଗୋଟିଏ ତୁଳନାତ୍ମକ ରଚନା । ତାହାହିଁ 'ଦର୍ଶନ ଓ ଦିଗଦର୍ଶନ' ହିନ୍ଦୀ ସାହିତ୍ୟରେ ଏପରି ପୁସ୍ତକ ଆଉ ରଚନା ହୋଇ ନାହିଁ । ବୌଦ୍ଧ ଦର୍ଶନ ସଂବନ୍ଧରେ ୧୦୦ ପୃଷ୍ଠା ଏବଂ ଇସଲାମ ଦର୍ଶନ ବିଷୟରେ ୧୨୫ ପୃଷ୍ଠା ଏଥିରେ ସେ ଲେଖିଛନ୍ତି । ଏ ବିଷୟରେ 'ଦର୍ଶନ ଦିଗଦର୍ଶନ' ଗ୍ରନ୍ଥର ଭୂମିକାରେ ସେ ଥିବା ପ୍ରଥମ ଓ ଶେଷ

ପରିଚ୍ଛେଦ ଦୁଇଟିକୁ ଏଠାରେ ଉଦ୍ଧାର କରିବାର ଲୋଭ ମୁଁ ସଂବରଣ କରି ପାରୁ ନାହିଁ । ଏହି ପୁସ୍ତକଟି ସେ ରଚନା କରିଥିଲେ ୧୯୪୨ରେ ହଜାରିବାଗ ସେଣ୍ଟ୍ରାଲ୍ ଜେଲରେ । ଏହି ଉଦ୍ଧୃତିରୁ ରାହୁଲଙ୍କ ଜୀବନ ଓ ଜଗତ ସମ୍ପର୍କରେ ଦାର୍ଶନିକ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ ।

ମଣିଷର ଅସ୍ତିତ୍ୱ ଯଦିଓ ପୃଥିବୀରେ ଏକ ଲକ୍ଷ ବର୍ଷରୁ ଆରମ୍ଭ ହୋଇଛି କିନ୍ତୁ ତାର ମସ୍ତିଷ୍କଜାତ ବୃଦ୍ଧିର ପ୍ରବଣତା ଆସିଛି ପାଞ୍ଚ ହଜାରରୁ ତିନି ହଜାର ଖ୍ରୀଷ୍ଟପୂର୍ବ ଭିତରେ ଅର୍ଥାତ କୃଷିକର୍ମ ଇତ୍ୟାଦି ନୂତନ ପରିବର୍ତ୍ତନ ଯେତେବେଳେ ସମାଜରେ ଆରମ୍ଭ ହୁଏ । ଏହି ଭାବରେ ମଣିଷର ମସ୍ତିଷ୍କର ତୀବ୍ରତା ଆମେ ପୁଣି ଅନୁଭବ କଲୁ ୧୭୬୦ ଇସା ପୂର୍ବଠାରୁ ଯେତେବେଳେ ଆଧୁନିକ ଆବିଷ୍କାର ଆରମ୍ଭ ହେଲା । କିନ୍ତୁ ପ୍ରଥମ ଯୁଗରେ ଦର୍ଶନର ଅସ୍ତିତ୍ୱ ନଥିଲା। ଦ୍ୱିତୀୟ ଯୁଗରେ ତାହା ଥିଲା ଯେମିତି ଯାହାର ସମୟ ସରି ଆସୁଚି ତାର ସମ୍ମାନ ବଢ଼େ, କିନ୍ତୁ ତାର ପରିଣତ ବୃଦ୍ଧି ଆହୁରି ଆକର୍ଷଣ କରେ । ତାର ଚିନ୍ତାଧାରା ମଧ୍ୟ ସେତେବେଳେ ହୁଏ କେତେକାଂଶରେ ବିଜ୍ଞାନ ସମ୍ମତ । ଯଦିଓ ତତ୍କାଳୀନ ଦାର୍ଶନିକ ଯଥା ରାଧାକୃଷ୍ଣନଙ୍କ ପରି କେହି ଏ କଥା ସ୍ୱୀକାର କରନ୍ତି ନାହିଁ । କିନ୍ତୁ ଏ କଥା କୁହନ୍ତି ଯେ ପୁରାତନ ଭାରତୀୟ ଦର୍ଶନ ବିଜ୍ଞାନ ବା କଳାର ଦୃଷ୍ଟିରେ ନୁହେଁ । କିନ୍ତୁ ଉଦାର ତଥା ସ୍ୱାଧୀନ ଦୃଷ୍ଟିଭଙ୍ଗୀରେ ରଚିତ। କିନ୍ତୁ ଧର୍ମର ରୀତିନୀତି ଚିରକାଳ ଚଳି ଆସିଛି, ଏବଂ ଧର୍ମର ଦାସତ୍ୱ ଠାରୁ ଆଉ କୋଉ ଦାସତ୍ୱ ବେଶୀ ଖରାପ ?'

ବିଶ୍ୱବ୍ୟାପୀ ଦର୍ଶନର ଧାରାବାହିକ ଅନୁଶୀଳନରୁ ବୁଝାଏ ଦର୍ଶନ ରାଷ୍ଟ୍ରମୟ ଅନେକ ବେଶୀ ଆନ୍ତର୍ଜାତୀୟ । ଯେ କୌଣସି ଦାର୍ଶନିକ ବିଚାରଧାରାକୁ ଗ୍ରହଣ କଲେ ଜଣାଯାଏ ତାହା ଯଥେଷ୍ଟ ଉଦାରତାପୂର୍ଣ୍ଣ । କିନ୍ତୁ ଗୋଟିଏ ଧର୍ମ ଅନ୍ୟ ଗୋଟିଏ ଦେଶର ଧର୍ମକୁ ସ୍ୱୀକାର କରିବାକୁ ଚାହେଁନା । ଏ କଥା କହିବା ଭୁଲ ଯେ ଦର୍ଶନ ସହିତ କୌଣସି ଅର୍ଥନୈତିକ ସଂପର୍କ ନଥିଲା । ତଥାପି ଦର୍ଶନ କେବେ ଗୋଟିଏ ରାଷ୍ଟ୍ରର ସ୍ୱାର୍ଥକୁ ଅନ୍ୟ ଏକ ରାଷ୍ଟ୍ର ଉପରେ ଲଦି ଦେଇ ନାହିଁ । ଏଇଥି ପାଇଁ ଦର୍ଶନରେ ଆମେ ଯେଉଁ ଗଂଗା, ଆମୁଦକଲା ଏବଂ ନାଲନ୍ଦା-ବୋଖାରୋ-ବାଗଦାଦ-କାରଦୋବାର ଗୋଟିଏ ସୌହାର୍ଦ୍ଦ୍ୟ ପୂର୍ଣ୍ଣ ସଂଗମ ଦେଖୁଁ ଠିକ୍ ସେମିତି ବିଜ୍ଞାନ କ୍ଷେତ୍ରରେ ଦେଖୁନା । ତେବେ ଦୁଃଖର କଥାଟି ହେଲା ସମୟ ଓ ସାଧନା ଅଭାବରୁ ଆମେ ଚୀନ ଓ ଜାପାନର ଦାର୍ଶନିକ ଧାରାକୁ ପାଉନାଁ । ଅବଶ୍ୟ ସେଥିରେ କ୍ଷତି ନାହିଁ । କାରଣ ଦର୍ଶନ କ୍ଷେତ୍ରରେ ରାଷ୍ଟ୍ରୀୟ ସୀମାକୁ

ଯୋଉମାନେ ଦେଖିବାକୁ ଚାହିଁଛନ୍ତି ସେମାନେ ନିଜକୁ ଓ ଅନ୍ୟମାନଙ୍କୁ ମଧ୍ୟ ଠକିଛନ୍ତି । (ଦର୍ଶନ-ଦିଗ ଦର୍ଶନ, ପୃ-୫-୮)

ରାହୁଲ ସଂକୃତାୟନ ଭାରତୀୟ ଓ ବୌଦ୍ଧ ଦର୍ଶନର ନୂତନ ବ୍ୟାଖ୍ୟାରେ ଆଗ୍ରହୀ ନ ଥିଲେ । ପ୍ରଗତିଶୀଳ ବିଚାରଧାରାକୁ କେବଳ ଭାରତରେ ପ୍ରଚାର କରିବାର ଆଗ୍ରହୀ ଥିଲେ । ସେ ଭାରତ ଓ ସୋଭିଏତ ଦେଶ ଭିତରେ ଥିବା ସାଂସ୍କୃତିକ ସମ୍ପର୍କ ବୃଦ୍ଧି ଓ ପଣ୍ଡିତମାନଙ୍କର ଆଦାନ ପ୍ରଦାନ ପାଇଁ ଚେଷ୍ଟା କରୁଥିଲେ । ସେ ବିଷୟରେ ମିନାୟେଭବ-ବରାନ୍ନିକଭ-ଶେରବଟକସୀ ଯାହା କିଛି କରିଥିଲେ ରାହୁଲ ଏକା ତା'ଠୁ ଅନେକ ବେଶୀ କରିଥିଲେ । ସାମ୍ୟବାଦୀ, ସ୍ୱାଧୀନ ଚିନ୍ତାଧାରା ସମ୍ପନ୍ନ ବ୍ୟକ୍ତିଙ୍କ ଭିତରେ ରାହୁଲ ନାଁ ପ୍ରଥମେ ଉଚ୍ଚାରିତ ହେଉଥିଲା ।

ଭାଷା ଓ ସାହିତ୍ୟ କ୍ଷେତ୍ରରେ ବିଶେଷତଃ ହିନ୍ଦୀ ଓ ଦେବନାଗରୀ ବିଷୟରେ ତାଙ୍କର ଆଗ୍ରହ କଥା ଆଗରୁ କୁହାଯାଇଛି । ସେ ସରଳ ହିନ୍ଦୀ ଭାଷାକୁ ଉତ୍ତର ଭାରତର ସର୍ବ ସାଧାରଣଙ୍କ ମୌଖିକ ଭାଷା ହିସାବରେ ଗ୍ରହଣ କରୁଥିଲେ । କିନ୍ତୁ ଇଂରାଜୀ ବା ଅନ୍ୟାନ୍ୟ ବିଦେଶୀ ଭାଷାର ସେ ଅବଶ୍ୟ ବିରୋଧି ନ ଥିଲେ । କିନ୍ତୁ ଇଂରେଜୀ ଭାଷାର ଦମ୍ଭ ଓ ମାତୃଭାଷା ପ୍ରତି ଭାରତୀୟମାନଙ୍କ ଅବହେଳାକୁ ସେ ଅସ୍ୱାଭାବିକ ମନେ କରୁଥିଲେ । ତଥାପି ସେ ହିନ୍ଦୀ ଭାଷାର ସୀମା ସମ୍ପର୍କରେ ଖୁବ୍ ସଚେତନ ଥିଲେ । ୧୯୪୮ ମସିହା ପର୍ଯ୍ୟନ୍ତ ହିନ୍ଦୀ ନାଟକର ଅବସ୍ଥାକୁ ସେ ଅନୁନ୍ନତ ମନେ କରୁଥିଲେ । ବିଜ୍ଞାନ ବିଷୟକ ସାହିତ୍ୟ ସୃଷ୍ଟି ସମ୍ପର୍କରେ ହିନ୍ଦୀ ଭାଷା ଅନ୍ୟ ଭାଷା ଠାରୁ ଅନେକ ପଛରେ ଥିଲା । ହିନ୍ଦୀ ବ୍ୟାକରଣକୁ ମଧ୍ୟ ସେ ଆହୁରି ସରଳ କରିବାର ଚେଷ୍ଟା କରିଥିଲେ । ପାଣିନୀଙ୍କ ଉଦାହରଣ ଦେଇ ସେ କହିଛନ୍ତି 'କଇ ଉଦୀଚ୍ୟ ଆଭର ପ୍ରତିଚ୍ୟ ଭେଦୋ କୋ' ସଂସ୍କୃତ ଭାଷା ମଧ୍ୟ ସ୍ୱୀକାର କରିଛି । ସେ ଚାହୁଁ ଥିଲେ ହିନ୍ଦୀ ଓ ଦେବନାଗରୀର ଯେତେ ଶୀର୍ଘ ବିକାଶ ହୁଏ ସେତେ ଭଲ ।

ସମାଜ ଉପଯୋଗୀ ପ୍ରଗତିଶୀଳ ସାହିତ୍ୟର ସେ ପକ୍ଷପାତୀ ଥିଲେ ଯାହା ଜନସାଧାରଣଙ୍କ କଲ୍ୟାଣ ଦିଗରେ କାମ କରିବ । ସେ ଗଜଦନ୍ତ ମୀନାରର ସ୍ଫଟିକ ସମ୍ପନ୍ନଶିଷ୍ଟ ଓ ସଂଭ୍ରାନ୍ତ ମଣିଷ ପାଇଁ ସାହିତ୍ୟ ସୃଷ୍ଟିର ବିରୋଧି ଥିଲେ । ଗଦ୍ଯ କବିତାର ବିଶେଷ କୌଣସି ଅଂଚଳର ରଂଗ ବ୍ୟଙ୍ଗ ସମ୍ପର୍କରେ ହିନ୍ଦୀ ସାହିତ୍ୟିକମାନଙ୍କର ମନୋଭାବ ନେଇ ସେ ଲେଖିଛନ୍ତି, ' ହିନ୍ଦୀ ସାହିତ୍ୟରେ ଏହି ପ୍ରକାର ତ୍ରୁଟି ଦେଖାଯାଏ। ବିହାରରେ ଧାନକ୍ଷେତ

ବା ପ୍ରଶସ୍ତ ପ୍ରାନ୍ତର । କିମ୍ବା ଗଡ଼ୱାଲର ଦେବଦାରୁ ବୃକ୍ଷ ଆଚ୍ଛାଦିତ ହିମାଳୟର ପର୍ବତ ଶିଖର ଅଥବା ମାଡ଼ୱାର ମାଟି ବା ଜବ୍‌ବଲପୁରର ବିନ୍ଧ୍ୟାଟବୀ, ଯାହା ବି ହେଉ ସବୁ ଅଞ୍ଚଳର କବି ଓ ଲେଖକ ସ୍ଥିର କରିଥିଲେ ଯେପରି ସେମାନଙ୍କ ରଚନାରେ ସ୍ଥାନୀୟ ଦୃଶ୍ୟରାଜି କେବେବି ବର୍ଣ୍ଣିତ ନହେଉ । ଏଥିପାଇଁ ହିନ୍ଦୀ ସାହିତ୍ୟରେ ରଚନା ବୈଭବର ଯଥେଷ୍ଟ ଅଭାବ । (ସାହିତ୍ୟ ନିବନ୍ଧାବଳୀ, ପୃ-୮)

ସେ ସ୍ପଷ୍ଟ କହିଛନ୍ତି – 'ପ୍ରଗତିଶୀଳ ଲେଖକ କେବେବି କୌଣସି ବିଶେଷ ସଂପ୍ରଦାୟଭୁକ୍ତ ହୁଅନ୍ତି ନାହିଁ । ପ୍ରଗତିର ଉଦ୍ଦେଶ୍ୟ ବନ୍ଦ ରାସ୍ତାକୁ ଖୋଲି ଦେବା ଏବଂତାର ବ୍ୟାପକ ବିସ୍ତାର କରିବା । ପ୍ରଗତିବାଦ ଶିଳ୍ପୀର ସ୍ୱାତନ୍ତ୍ର୍ୟ-ସ୍ୱାଧୀନତାର ଶତ୍ରୁ ନୁହେଁ । ସଂକୀର୍ଣ୍ଣତା ହିଁ କଳାକାରର ଶତ୍ରୁ ।

ତାଙ୍କ ଦୃଷ୍ଟିରେ ପ୍ରଗତିଶୀଳ ଲେଖକ ଜନସାଧାରଣଙ୍କ ଲେଖକ । ଏଇ ଶ୍ରେଣୀର ଲେଖକ ଜନତାର ଭାଷାକୁ ତାର ରଚନାର ଭାଷା ହିସାବରେ ପ୍ରୟୋଗ କରିପାରେ । ଏବଂ ସେ ଜନସାଧାରଣ ପକ୍ଷରୁ ହିଁ ଲେଖନୀ ଧାରଣ କରେ । ତା'ରି ପକ୍ଷରେ ସମ୍ଭବ ଜନତାର ନେତୃତ୍ୱ ନେବା । ସେ ଏକାଧାରରେ ସିପାହୀ ଓ ସେନାପତିର ଭୂମିକା ଗ୍ରହଣ କରିପାରେ । ସେଥିପାଇଁ ସେ ଏକାନ୍ତ ଭାବେ ଜନତାର ସମଧର୍ମୀ ।

ଏଇ ଚିନ୍ତା ସମ୍ପନ୍ନ ରାହୁଲ ସ୍ୱାଭାବିକ ଭାବେ 'କଳା ପାଇଁ କଳା'ର ବିରୋଧି ଥିଲେ । ଲୋକ କଳା, ଲୋକ ସଂଗୀତ, ଲୋକ ନୃତ୍ୟକୁ ସେ ଆନ୍ତରିକ ଭାବେ ଭଲ ପାଉଥିଲେ । ଲୋକ କଳାକୁ ସେ ମିଉଜିଅମର ଦ୍ରଷ୍ଟବ୍ୟ ବସ୍ତୁ ଭାବରେ ସେ ଦେଖୁ ନଥିଲେ ବା ସହରରେ ଲୋକଙ୍କର ମନୋରଂଜନର ବସ୍ତୁ ଭାବେ ଗ୍ରହଣ କରୁ ନ ଥିଲେ । ତାଙ୍କର ମତ ଥିଲା କଳା ଉଦ୍ଦେଶ୍ୟମୂଳକ ହେବା ଉଚିତ ଏବଂ ଦୀନ ଦରିଦ୍ର ତଥା ପଛରେ ପଡ଼ିଥିବା ସମାଜର କଲ୍ୟାଣ ଓ ସେମାନଙ୍କ ମୁକ୍ତି ପାଇଁ କଳାର ପ୍ରୟୋଗ ହେବା ଉଚିତ ।

ସବା ଶେଷରେ ତାଙ୍କର "ବୁଦ୍ଧ ଓ ଗାନ୍ଧୀ" ପ୍ରବନ୍ଧରୁ କିଛି ଉଦାହରଣ ଦେଉଛି (ମୂଳ ଇଂରାଜୀ ରଚନାଟି ହଜି ଯାଇଛି) ଯାହା ଗାନ୍ଧୀଜୀଙ୍କ ମୃତ୍ୟୁ ପରେ ହିନ୍ଦୀ ମାସିକ ପତ୍ରିକା 'ଆଜକାଲ'ର ଗାନ୍ଧୀ ବିଶେଷ ସଂଖ୍ୟାରେ ପ୍ରକାଶିତ ହେଇଥିଲା ୧୯୪୮ ମସିହାରେ । ୧୯୪୭ ଅଗଷ୍ଟ ୧୫ ଓ ୧୯୪୮ ଜାନୁଆରୀ ୩୦ ଭିତରେ କୌଣସି ସମୟରେ ପ୍ରବଂଧଟି ରଚିତ ହୋଇଥିଲା । ଏଥିରେ ଗାନ୍ଧୀଜୀଙ୍କ ସଂପର୍କରେ ଥିବା ପୁରୁଣା ମନ୍ତବ୍ୟ – ଗାନ୍ଧୀଜୀ ଜଣେ ସ୍ୱପ୍ନଦର୍ଶୀ କିମ୍ବା କେବଳ ଜଣେ ପୁଂଜିପତିଙ୍କର ଏଜେଣ୍ଟ୍ ବା ଅହିଂସା

ରାମ ରାଜତ୍ୱରେ ବିଶ୍ୱାସୀ ଜଣେ ଆଦର୍ଶବାଦୀ ମଣିଷ, ରାହୁଳ ସେଥିରେ ପରିବର୍ତ୍ତନ ଆଣିଛନ୍ତି । ଶ୍ରଦ୍ଧାଞ୍ଜଳି ଦେବା ଅବସରରେ ଏଇ ପ୍ରବଂଧରେ ସେ ଗାନ୍ଧୀ ଓ ବୁଦ୍ଧ-ଏଇ ଦୁଇ ମହାପୁରୁଷଙ୍କ ତୁଳନା କରିଛନ୍ତି ।

ବୁଦ୍ଧ ସବୁ ପ୍ରାଣୀଙ୍କର ମଙ୍ଗଳ ଚାହିଁଥିଲେ – 'ସର୍ବେ ସତ୍ତା ଭବନ୍ତୁ ସୁଖୀ ତତ୍ତା' । ସେ ଜଣେ ନିଷ୍କ୍ରିୟ ସ୍ୱପ୍ନଦ୍ରଷ୍ଟା ନଥିଲେ । ସେ ଥିଲେ ଯଥାର୍ଥବାଦୀ । ଏହା ପରେ ସେ ଯେତେବେଳେ କର୍ମକ୍ଷେତ୍ରରେ ସକ୍ରୀୟତା ପାଇଁ ଶିଷ୍ୟମଣ୍ଡଳୀକୁ ନିର୍ଦ୍ଦେଶ ଦେଉଥିଲେ, ବୌଦ୍ଧଧର୍ମ ପ୍ରଚାର ପାଇଁ ପ୍ରେରଣା ଦେଉଥିଲେ, ସେତେବେଳେ ସେ ଏ କଥା କହି ନଥିଲେ ଯେ ସବୁ ପ୍ରାଣୀଙ୍କର ହିତ ପାଇଁ ଯତ୍ନଶୀଳ ରହିବାକୁ ହେବ, କିନ୍ତୁ ଅଧିକର ସୁଖ ଓ ହିତ ପାଇଁ ସଚେଷ୍ଟ ରହିବାକୁ ହେବ । ଅନେକ ସମୟରେ ଅଧିକ ମଣିଷଙ୍କ ପାଇଁ ଯାହା ସୁଖ ଓ ହିତ ତାହା ଅନ୍ୟ କିଛି ସଂଖ୍ୟକ ଲୋକଙ୍କ ପାଇଁ ହିତ ନୁହେଁ । ତାଙ୍କ ବିଚାରରେ ଆଦିମ କାଳରେ ମଣିଷ ଯେମିତି ଭାବରେ ସବୁ ବସ୍ତୁକୁ ସମାନ ଭାବରେ ଭୋଗ କରୁଥିଲେ, ତାହାହିଁ ଆଦର୍ଶ ହେବା ଉଚିତ। କିନ୍ତୁ ଲୋଭ ସେଇ ସମାନ ଭାବେ ଭୋଗ କରିବାକୁ ଧ୍ୱଂସ କରେ ଏବଂ ସେଥିରେ ବ୍ୟକ୍ତିଗତ ସମ୍ପତ୍ତି ଜନ୍ମଲାଭ କରେ । ତେବେ ନିତାନ୍ତ ବ୍ୟକ୍ତିଗତ ଉପଭୋଗ ଏକ ମୌଳିକ ଅପରାଧ ଯାହା ପାଇଁ ଆଜି ମଧ ମଣିଷ ଦୁଃଖ ଭୋଗ କରୁଛି ଓ କରିବ ମଧ । ତାଙ୍କ ମତରେ ଏଇ ବ୍ୟକ୍ତିଗତ ସମ୍ପତ୍ତି ସୁଖଭୋଗର ଲୋକ ହିଁ ଚୌର୍ଯ୍ୟବୃତ୍ତିକୁ ଜନ୍ମ ଦିଏ ଏବଂ ଚୋରି ଠାରୁ ହତ୍ୟା ଓ କଳହର ଉତ୍ପତ୍ତି ହୁଏ । ତେଣୁ ଅପରାଧରୁ ମୁକ୍ତି ପାଇଁ ମଣିଷକୁ ଦଣ୍ଡଦାତା ପାଖରେ ଶେଷରେ ପହଞ୍ଚିବାକୁ ପଡ଼େ । କିନ୍ତୁ ମଣିଷ ସମାଜର ଏଇ ରୋଗମୁକ୍ତିର କୌଣସି ଔଷଧ ନାହିଁ । ବୁଦ୍ଧ ତାଙ୍କ ଆଦର୍ଶରେ ଭିକ୍ଷୁ ଓ ଭିକ୍ଷୁଣୀମାନଙ୍କ ମଧରେ ସାମ୍ୟବାଦ ପ୍ରଚାରର ଚେଷ୍ଟା କରିଥିଲେ । ତାଙ୍କର ସର୍ବଶେଷ ଉପଦେଶ ଥିଲା – 'ଶତ୍ରୁତାର ବିନାଶ ଶତ୍ରୁତା ଦ୍ୱାରା କେବେବି ସମ୍ଭବ ନୁହେଁ ।'

ଯୁଦ୍ଧ ପରେ ଗାନ୍ଧୀଜୀଙ୍କ ବ୍ୟତୀତ ଆଉ କେହି ମହାପୁରୁଷ ନ ଥିଲେ ଯିଏ ସମାଜକୁ ଏତେ ମହାନ ଉପଦେଶ ଦେଇ ପାରିଛନ୍ତି । କିନ୍ତୁ ଗାନ୍ଧୀଜୀଙ୍କ ଦର୍ଶନରେ ବୁଦ୍ଧ ଦର୍ଶନ ଭଳି ମୌଳିକତା ଦେଖିବାକୁ ମିଳେନା । ଯଦି ତାଙ୍କ ଆଦର୍ଶକୁ ଦର୍ଶନ ଠାରୁ ଅଲଗା କରି ଦେଖାଯାଏ ତା ହେଲେ ଗାନ୍ଧୀଜୀଙ୍କ ସତ୍ୟ ଓ ଅହିଂସାର ବାଣୀକୁ ତାଙ୍କର ବ୍ୟକ୍ତିଗତ ଆଦର୍ଶ ବୋଲି ମନେ ହେବ । ଗାନ୍ଧୀଜୀ ବଞ୍ଚିଥିଲେ ମଣିଷମାନଙ୍କ ପାଇଁ, ସେ ସାରା ଜୀବନ ସାଧାରଣ ମଣିଷ ପାଇଁ ସଂଗ୍ରାମ କରିଛନ୍ତି । ମୋ ମତରେ, ସେଥିପାଇଁ ତାଙ୍କୁ

ବୁଦ୍ଧଙ୍କ ଅପେକ୍ଷା ମଧ୍ୟ ବେଶୀ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି । କାରଣ ବୁଦ୍ଧ କେବଳ ମାତ୍ର ତାଙ୍କ ସହଯାତ୍ରୀଙ୍କୁ ଆକ୍ରମଣରୁ ରକ୍ଷା କରିବା ପାଇଁ ଜାଣିଶୁଣି ଅଙ୍ଗୁଳିମାଳାର ସମ୍ମୁଖୀନ ହୋଇଥିଲେ । କିନ୍ତୁ ଗାନ୍ଧୀଜୀ ଶତବାର ଜୀବନପଣ କରିଥିଲେ ଅନ୍ୟମାନଙ୍କ ମୁକ୍ତି ପାଇଁ । ଜାତିଭେଦ ପ୍ରଥା ଉଚ୍ଛେଦ ପାଇଁ ଏବଂ ହଜାର ହଜାର ମଣିଷର ପ୍ରାଣରକ୍ଷା ପାଇଁ ଗାନ୍ଧୀଜୀ ଦକ୍ଷିଣ ଆଫ୍ରିକାରେ ଥରେ ତାଙ୍କ ଜୀବନ ଉତ୍ସର୍ଗ ପାଇଁ ଶପଥ ନେଇଥିଲେ । କଲିକତା, ଦିଲ୍ଲୀ ଓ ଅନ୍ୟାନ୍ୟ ସ୍ଥାନରେ ସାମ୍ପ୍ରଦାୟିକ ସଦ୍‌ଭାବ ସ୍ଥାପନ ପାଇଁ ଗାନ୍ଧୀଜୀ ଯେ ଚେଷ୍ଟା କରିଥିଲେ ସେ କଥା କିଏ ବା ନଜାଣେ ? ସେ ଯେ ମହାମାନବ ଏଥିରେ ସଂଦେହ କ'ଣ ବା ଅଛି ?

ଯଦିଓ ଗାନ୍ଧୀଜୀ ପରମାତ୍ମା ଓ ଅପରିବର୍ତ୍ତନଶୀଳ ଜଗତର ଦର୍ଶନରେ ବିଶ୍ୱାସୀ ଥିଲେ, କିନ୍ତୁ ସେଥିପାଇଁ ତାଙ୍କ କର୍ମକ୍ଷେତ୍ର କେବେ ବି ନିଷ୍କ୍ରିୟ ନଥିଲା । ତାଙ୍କ ପ୍ରତ୍ୟେକ ଶିରା ଓ ଧମନୀରେ ପ୍ରବାହିତ ହେଉଥିଲା ବହୁ ମଣିଷର କଲ୍ୟାଣ କାମନା, ସେଥିପାଇଁ ତାଙ୍କ ବ୍ୟକ୍ତିତ୍ୱର ପରିବର୍ତ୍ତନ ମଧ୍ୟ ଅନିବାର୍ଯ୍ୟ ଥିଲା । କିନ୍ତୁ ସେ ବୁଦ୍ଧଙ୍କ ଗତିଶୀଳ ଦର୍ଶନରେ ବିଶ୍ୱାସ କରୁ ନଥିଲେ - ଏଇଟା ଅବଶ୍ୟ ଦୁଃଖର କଥା । ବହୁ ଦିନ ହେଲା ଗାନ୍ଧୀଜୀଙ୍କ ମନରେ ଗୋଟିଏ ନୂଆ ଭାବନାର ଉଦ୍‌ଭବ ହେଉଥିଲା । ତାହା ହେଲା, ଭାରତୀୟ ଜନତା କେବଳ ରାଜନୈତିକ କ୍ଷେତ୍ରରେ ସ୍ୱାଧୀନ ରହିବେ ନାହିଁ ସେମାନଙ୍କର ଅର୍ଥନୈତିକ ସ୍ୱାଧୀନତା ମଧ୍ୟ ଆବଶ୍ୟକ । ଏଇଥିରୁ ସାମାଜିକ ବିପ୍ଳବ ସମ୍ଭବ । ବୁଦ୍ଧଙ୍କ ପରି ସେ ମଧ୍ୟ ବୁଝିଥିଲେ ଯେ ସମାଜରେ ଏପରି ଗୋଟିଏ ଗୋଷ୍ଠୀର ମଣିଷ ପ୍ରଭୁତ୍ୱ କରୁଛନ୍ତି ଯୋଉମାନଙ୍କ ପାଇଁ ଏ ଶ୍ରେଣୀ ସଂଘର୍ଷ । ସେ ସ୍ପଷ୍ଟ ଭାବରେ ଏଇ ପ୍ରଭୁତ୍ୱକାରୀମାନଙ୍କୁ ତିରସ୍କାର କରିଥିଲେ । ଏଥିରୁ ସମାଜର ପ୍ରଧାନ ସମସ୍ୟାଗୁଡ଼ିକ ବିଷୟରେ ତାଙ୍କର ଧ୍ୟାନ ଧାରଣା କଥା ଜଣାଯାଏ । ସେ ସମାଜବାଦ ସମ୍ପର୍କରେ ଯେମିତି କହନ୍ତି ସେମିତି ମଧ୍ୟ ସେ ବେଶୀ ଜୋର ଦିଅନ୍ତି ସତ୍ୟ ଓ ଅହିଂସାର ଆଦର୍ଶ ଉପରେ । ତାଙ୍କ ମତରେ କୌଣସି ସମାଜବାଦୀ କେବେବି ସତ୍ୟର ଶତ୍ରୁ ନୁହେଁ ଏବଂ କୌଣସି ସମାଜବାଦୀ କେବେ ବି ସତ୍ୟର ଶତ୍ରୁ ନୁହେଁ ଏବଂ କୌଣସି ସମାଜବାଦୀ ମଧ୍ୟ ହିଂସା ପାଇଁ ହିଂସା ଚାହେଁନା । ଅସଲ ସମାଜବାଦୀ ବା ସାମ୍ୟବାଦୀ ଆତ୍ମରକ୍ଷା ପାଇଁ ହିଂସା ପରାୟଣତାର ଆଶ୍ରୟ ନେଇପାରେ, ଏବଂ ସେଇଟା ମଧ୍ୟ ଯେତେବେଳେ ଶାନ୍ତିପୂର୍ଣ୍ଣ ସମାଧାନର କୌଣସି ରାସ୍ତା ନ ଥାଏ ଓ ଆକ୍ରମଣକାରୀମାନେ ସିଧା ଆକ୍ରମଣ ଆରମ୍ଭ କରି ଦିଅନ୍ତି ।

ତଥାପି ଭବିଷ୍ୟତରେ ପୁଂଜିବାଦ ଓ ଏକନାୟକତନ୍ତ୍ରର ବିକାଶ ପାଇଁ ସଂଘର୍ଷ ଆସିବ । ମୋର ସମ୍ପୂର୍ଣ୍ଣ ଆଶା ଓ ବିଶ୍ୱାସ ଯେ ହିଂସ୍ର ଆତତାୟୀ ଅପେକ୍ଷା ନିରପରାଧର ଅହିଂସାର ମନ୍ତ୍ର ଅନେକ ବେଶୀ ଶକ୍ତିଶାଳୀ । ସେମାନେ ତାଙ୍କର ଗୋଟିଏ ବିନ୍ଦୁ ରକ୍ତପାତ ନ କରି ସାମନ୍ତତନ୍ତ୍ର ପ୍ରଥା ଓ ସମାଜରେ ଘଟୁଥିବା ପ୍ରତ୍ୟେକ ଅତ୍ୟାଚାରକୁ ଚିରଦିନ ପାଇଁ ବନ୍ଦ କରି ଦେଇ ପାରିବେ । ଆମର ସମୟ ଅନେକ କମ । ଆମେ ତେଣୁ ତାର ଦୀର୍ଘାୟୁ କାମନା କରୁଁ । କାରଣ ଗାନ୍ଧୀଜୀଙ୍କ ଜୀବନର ମଧ୍ୟ ସୀମା ଅଛି । ଗାନ୍ଧିଜୀ ଯେତେ ଶୀଘ୍ର ସମ୍ଭବ ସ୍ଥିର କରି ନେବେ ଯେ, ସେ ଅହିଂସବାଦୀ ବିପ୍ଳବୀମାନଙ୍କୁ ନେତୃତ୍ୱ ଦେଇ ଅର୍ଥନୈତିକ ଭେଦଭାବ ଦୂର କରି ସେ ଦିନେ ସାଧାରଣ ଜନତାଙ୍କୁ ବସ୍ତୁତଃ ଏ ଦେଶର ରାଜା ତିଆରି କରି ଦେବେ । ତାଙ୍କ ନେତୃତ୍ୱରେ ଭାରତ ରାଜନୈତିକ ସ୍ୱାଧୀନତା ହାସଲ କରିଛି । ଇତିହାସ ଓ ଜନସାଧାରଣ ତାଙ୍କ ନେତୃତ୍ୱକୁ ବରାବର ମନେ ରଖିବେ । ଯଦି ଗାନ୍ଧୀଜୀ ତାଙ୍କର ବାର୍ଦ୍ଧକ୍ୟରେ ମଧ୍ୟ ଏହି ଅନୁଭବ ସାହାଯ୍ୟରେ ଭାରତକୁ ଆର୍ଥିକ ଦୁର୍ଭୋଗ ଓ ଜାତିଭେଦର ଅତ୍ୟାଚାରରୁ ମୁକ୍ତ କରି ପାରିବେ ତେବେ ଏଥିରେ ସେ ସେଇ କାମ କରିବେ ଯାହା ବୁଦ୍ଧ ମଧ୍ୟ କରି ପାରି ନଥିଲେ । ଏବଂ ସେତକ ଯଦି ସମ୍ଭବ ହୁଏ ମାନବ ଜାତିର ସୁଖ ପାଇଁ ମହାତ୍ମାଗାନ୍ଧୀ ଭଗବାନ ବୁଦ୍ଧଙ୍କ ଠାରୁ ମଧ୍ୟ ଉପରକୁ ଉଠି ଯିବେ ଏବଂ ଇତିହାସ ତାଙ୍କୁ ସେଇ ଭାବରେ ହିଁ ସ୍ମରଣ କରିବ ।' ('ଅତୀତ ସେ ବର୍ତ୍ତମାନ', ପୃ-୧୨୦-୧୨୩)



# ପରିଶିଷ୍ଟ -୧

## ରାହୁଲଙ୍କ ଜୀବନର ଉଲ୍ଲେଖଯୋଗ୍ୟ ଘଟଣାବଳୀ

**୯, ଏପ୍ରିଲ୍ ୧୮୯୩, ଜିଲ୍ଲା ଆଜମଗଡ଼, ଉତ୍ତରପ୍ରଦେଶ ନାନିହାଲରେ ଜନ୍ମ । ପି : ଗୋବର୍ଦ୍ଧନ ପାଣ୍ଡେ, ମାତା : କୁଲବନ୍ତୀ ଦେବୀ । ଚାରି ଭାଇ ଓ ଏକମାତ୍ର ଭଉଣୀ ଭିତରେ ସବୁଠାରୁ ବଡ଼ । ଜନ୍ମ ନାମ - କେଦାର ପାଣ୍ଡେ ।**

୧୯୧୨-୧୩ - ପରସା ମଠରେ ସନ୍ୟାସ ଗ୍ରହଣ ଏବଂ ଭାବୀ ମଠାଧୀଶ ।

୧୯୧୩-୧୪ - ଦକ୍ଷିଣ ଭାରତ ଯାତ୍ରା ।

୧୯୨୨ - ବକସାଲ ଜେଲରେ ଛ' ମାସ । ଜିଲ୍ଲା କଂଗ୍ରେସର ସମ୍ପାଦକ ।

୧୯୨୩-୨୫ - ହଜାରୀବାଗ ଜେଲରେ ।

୧୯୨୭-୨୮ - ଶ୍ରୀଲଙ୍କାରେ ସଂସ୍କୃତ ଅଧ୍ୟାପକ । ବୌଦ୍ଧ ସାହିତ୍ୟ ଅନୁଶୀଳନ ।

୧୯୨୯-୩୦ - ତିବ୍‌ବତରେ ଗୋଟିଏ ବର୍ଷ ତିନି ମାସ ଅବସ୍ଥାନ ।

୧୯୩୨-୩୩ - ଇଂଲଣ୍ଡ ଓ ଇଉରୋପ ଯାତ୍ରା ।

୧୯୩୪ - ଦ୍ୱିତୀୟବାର ତିବ୍‌ବତ ଭ୍ରମଣ ।

୧୯୩୫ - ଜାପାନ, କୋରିଆ, ମାଞ୍ଚୁରିଆ, ସୋଭିଏତ ଋଷିଆ ଓ ଇରାନ ଭ୍ରମଣ ।

୧୯୩୬ - ତୃତୀୟବାର ତିବ୍‌ବତ ଯାତ୍ରା ।

୧୯୩୭ - ଦ୍ୱିତୀୟବାର ସୋଭିଏତ ଋଷିଆ ଯାତ୍ରା ।

୧୯୩୮ - ଚତୁର୍ଥବାର ତିବ୍‌ବତ ଯାତ୍ରା । ଇଗୋର ଜନ୍ମ ।

୧୯୩୯ - ଆମବାରୀରେ କୃଷକ ସତ୍ୟାଗ୍ରହ ଏବଂ କାରାବାସ ।

୧୯୪୦-୪୨ - ହଜାରୀବାଗ ଜେଲ୍ ଓ ଦେଓଲୀ କେମ୍ପରେ ବନ୍ଦୀ ।

୧୯୪୩ - ୩୪ ବର୍ଷ ପରେ ଜନ୍ମଭୂମିକୁ ପ୍ରତ୍ୟାବର୍ତ୍ତନ ।

୧୯୪୪-୪୭ - ସୋଭିଏତ ଋଷିଆରେ ଲେନିନଗ୍ରାଡ଼ରେ ଅଧ୍ୟାପନା ।

୧୯୪୭-୪୮ - ଏଲାହାବାଦ ହିନ୍ଦୀ ସାହିତ୍ୟ ସମ୍ମେଳନ, ଅଧ୍ୟକ୍ଷ ।

୧୯୫୦ - ମସୌରୀରେ ଘର କ୍ରୟ, ପରେ ବିକ୍ରି ।

୧୯୫୩ - କନ୍ୟା ଜୟାର ଜନ୍ମ ।

| | |
|---|---|
| ୧୯୫୫ | - ପୁତ୍ର ଜେତାର ଜନ୍ମ । |
| ୧୯୫୮ | - ଚୀନ ଗଣତନ୍ତ୍ରରେ ସାଢ଼େ ଚାରିମାସ ଅବସ୍ଥାନ । |
| ୧୯୫୯-୬୧ | - ଶ୍ରୀଲଙ୍କାରେ ଦର୍ଶନ ଅଧ୍ୟାପକ । |
| ୧୯୬୧ ଡିସେମ୍ବର | - ସ୍ମୃତିଭ୍ରଷ୍ଟ । |
| ୧୯୬୨-୬୩ | - ଚିକିତ୍ସା ପାଇଁ ସାତ ମାସ ସୋଭିଏତ ଋଷିଆରେ ଅବସ୍ଥାନ । |
| ୧୯୬୩ ଏପ୍ରିଲ୍ ୧୮ | - ମୃତ୍ୟୁ । |

# ରାହୁଲ ସଂକୃତାୟନଙ୍କ ସମ୍ମାନ ଓ ଉପାଧି

| | |
|---|---|
| ୧. ମହାପଣ୍ଡିତ | କାଶୀ ପଣ୍ଡିତ ସଭା । |
| ୨. ତ୍ରିପିଟକାଚାର୍ଯ୍ୟ | ବିଦ୍ୟାଲଂକାର ପରିବେଶ, ଶ୍ରୀଲଙ୍କା । |
| ୩. ସାହିତ୍ୟ ବାଚସ୍ପତି | ହିନ୍ଦୀ ସାହିତ୍ୟ ସମ୍ମେଳନ, ଏଲାହାବାଦ । |
| ୪. ଡି. ଲିଟ୍ | ଭାଗଲପୁର ବିଶ୍ୱବିଦ୍ୟାଳୟ, ଭାଗଲପୁର । |
| ୫. ଡି. ଲିଟ୍ | ବିଦ୍ୟାଲଂକାର ବିଶ୍ୱବିଦ୍ୟାଳୟ, ଶ୍ରୀଲଙ୍କା । |
| ୬. ପଦ୍ମଭୂଷଣ | ଭାରତ ସରକାର । |

# ପରିଶିଷ୍ଟ -୨

# ରାହୁଲ ସଂକୃତାୟନଙ୍କ ରଚନାବଳୀ ହିନ୍ଦୀ

| | | | |
|---|---|---|---|
| ଉପନ୍ୟାସ : | ୧. | ଆଇଶବିଂସଦୀ | ୧୯୨୩ (?) |
| | ୨. | ଜୀନେ କେ ଲିଏ | ୧୯୪୦ |
| | ୩. | ସିଂହ ସେନାପତି | ୧୯୪୪ |
| | ୪. | ଜୟ ଯୌଧେୟ | ୧୯୪୪ |
| | ୫. | ଭାଗୋ ନହୀ, ଦୁନିଆ କୋ ବଦ୍‌ଲୋ | ୧୯୪୪ |
| | ୬. | ମଧୁର ସ୍ୱପ୍ନ | ୧୯୪୯ |
| | ୭. | ରାଜସ୍ଥାନୀ ରଣିବାସ | ୧୯୫୩ |
| | ୮. | ବିସ୍ମୃତ ଯାତ୍ରୀ | ୧୯୫୪ |
| | ୯. | ଦିଂବୋବାସ | ୧୯୬୦ |
| ଗଳ୍ପ : | ୧୦. | ସତମୀ କେ ବାଚେ | ୧୯୩୫ |
| | ୧୧. | ଭୋଲଗା ସେ ଗଙ୍ଗା | ୧୯୪୪ |
| | ୧୨. | ବହୁରଙ୍ଗୀ ମଧୁପରୀ | ୧୯୫୩ |
| | ୧୩. | କନୈଲା କି କଥା | ୧୯୫୫-୫୬ |
| ଆତ୍ମକଥା : | ୧୪. | ମେରୀ ଜୀବନ ଯାତ୍ରା (ପାଞ୍ଚଖଣ୍ଡ) | ୧-୧୯୪୪<br>୨-୧୯୫୦ |

ଅବଶିଷ୍ଟ ତିନି ଖଣ୍ଡ ମୃତ୍ୟୁ ପରେ ପ୍ରକାଶିତ

ଜୀବନୀମୂଳକ ଗ୍ରନ୍ଥ :

| | | |
|---|---|---|
| ୧୫. | ନଏ ଭାରତ କେ ନଏ ନେତା, | ୧୯୪୨ (ଦୁଇଖଣ୍ଡ) |
| ୧୬. | ବଚ୍‌ପନ୍ କି ସ୍ମୃତିଆଁ | ୧୯୫୩ |
| ୧୭. | ଅତୀତ ସେ ବର୍ତ୍ତମାନ | (୧ମ ଖଣ୍ଡ) ୧୯୫୩ |
| ୧୮. | ଷ୍ଟାଲିନ | ୧୯୫୪ |
| ୧୯. | ଲେନିନ | ୧୯୫୫ |
| ୨୦. | କାର୍ଲମାର୍କସ | ୧୯୫୫ |
| ୨୧. | ମାଓ-ସେ-ତୁଂ | ୧୯୫୪ |
| ୨୨. | ସରଦାର ପୃଥ୍ୱି ସିଂ | ୧୯୫୫ |
| ୨୩. | ମହାମାନବ ବୁଦ୍ଧ | ୧୯୫୬ |

| | | |
|---|---|---|
| ୨୪. | ଘୁମକ୍କଡ଼ ସ୍ୱାମୀ | ୧୯୫୬ |
| ୨୫. | ମେରେ ଅସହଯୋଗ କି ସାଥୀ | ୧୯୫୬ |
| ୨୬. | ଜିନ୍‌କା ମେଁୟ କୃତଜ୍ଞ | ୧୯୫୬ |
| ୨୭. | ବୀର ଚନ୍ଦ୍ର ସିଂହ ଗଡ଼ୱାଲୀ | ୧୯୫୬ |
| ୨୮. | ସିଂହଲ ଘୁମକ୍କଡ଼ ଜୟବର୍ଦ୍ଧନ | ୧୯୬୦ |
| ୨୯. | କପ୍ତାନ ଲାଲ | ୧୯୬୧ |
| ୩୦. | ସିଂହଲ କେ ବୀର ପୁରୁଷ | ୧୯୬୧ |

**ଭ୍ରମଣ କାହାଣୀ :**

| | | |
|---|---|---|
| ୩୧. | ମେରୀ ଲାଦାଖ ଯାତ୍ରା | ୧୯୨୬ |
| ୩୨. | ଲଙ୍କା | ୧୯୨୬-୨୭ |
| ୩୩. | ତିବ୍‌ବତ ମେ ସଉଆବର୍ଷ | ୧୯୩୧ |
| ୩୪. | ମେରୀ ଇଉରୋପ ଯାତ୍ରା | ୧୯୩୨ |
| ୩୫. | ଜାପାନ | ୧୯୩୫ |
| ୩୬. | ଯାତ୍ରା କେ ପନ୍ନେ | ୧୯୩୪-୩୬ |
| ୩୭. | ଇରାନ | ୧୯୩୫-୩୬ |
| ୩୮. | ମେରୀ ତିବ୍‌ବତ ଯାତ୍ରା | ୧୯୩୭ |
| ୩୯. | ଋଷ ମେ ପଚିଶ ମାସ | ୧୯୪୪-୪୭ |
| ୪୦. | କିନ୍ନର ଦେଶ | ୧୯୪୮ |
| ୪୧. | ଘୁମକ୍କଡ଼ ଶାସ୍ତ୍ର | ୧୯୪୯ |
| ୪୨. | ଏସିଆକେ ଦୁର୍ଗମ ଭୂଖଣ୍ଡ ମେଁ, | ୧୯୫୬ |
| ୪୩. | ଚୀମ ମେ କ୍ୟା ଦେଖା ? | ୧୯୬୦ |

**ପ୍ରବନ୍ଧ :**

| | | |
|---|---|---|
| ୪୪ | ସାମ୍ୟବାଦ ହି କେଓଁ ? | ୧୯୩୪ |
| ୪୫. | ପୂରାତତ୍ୱ ନିବନ୍ଧାବଳୀ | ୧୯୩୬ |
| ୪୬. | ଦିମାଗୀ ଗୁଲାମୀ | ୧୯୩୭ |
| ୪୭. | ତୁମହାରୀ କ୍ଷୟ | ୧୯୩୭ |
| ୪୮. | ଆଜ୍ କି ସମସ୍ୟାଯେଁ | ୧୯୪ (?) |
| ୪୯. | ସାହିତ୍ୟ ନିବନ୍ଧାବଳୀ | ୧୯୪୯ |
| ୫୦. | ଅତୀତ ସେ ବର୍ତ୍ତମାନ (ଦୁଇଖଣ୍ଡ) | ୧୯୫୩ |

ଭୋଜପୁରୀ :

୫୧. ତନୀ ନାଟକ ୧୯୪୨
୫୨. ପାଞ୍ଚ ନାଟକ ୧୯୪୨

ତିବ୍ବତି :

୫୩. ତିବ୍ବତି ବାଲ ଶିକ୍ଷା ୧୯୩୩
୫୪. ପାଠାବଲୀ (ଭାଗ ୧,୨,୩) ୧୯୩୩
୫୫. ତିବ୍ବତି ବ୍ୟାକରଣ ୧୯୩୩

## ଅନ୍ୟାନ୍ୟ ରଚନା ସମୂହ (ହିନ୍ଦୀ)

ବିଜ୍ଞାନ :

୧. ବିଶ୍ୱ କୀ ରୂପରେଖା ୧୯୪୨

ସମାଜ ବିଜ୍ଞାନ :

୨. ମାନବ ସମାଜ ୧୯୪୨

ରାଜନୀତି :

୩. କ୍ୟା କରେଁ ? ୧୯୩୭
୪. ସୋଭିଏତ ନ୍ୟାୟ ୧୯୩୯
୫. ରାହୁଲଜୀ କା ଅପରାଧ, ୧୯୩୯
୬. ସୋଭିଏତ କମ୍ୟୁନିଷ୍ଟ ପାର୍ଟି
କା ଇତିହାସ ୧୯୩୯
୭. ଆଜ କୀ ରାଜନୀତି ୧୯୪୯
୮. କମ୍ୟୁନିଷ୍ଟ କ୍ୟା ଚାହଁତେ ହେଁ ? ୧୯୫୩
୯. ଚୀନ୍ ମେଁ କମ୍ୟୁନ ୧୯୬୦
୧୦. ରାମରାଜ୍ୟ ଅଓର ମାର୍କ୍ସବାଦ

ଦର୍ଶନ :

୧୧. ବୈଜ୍ଞାନିକ ଭୌତିକବାଦ ୧୯୪୨
୧୨. ଦର୍ଶନ - ଦିଗ୍‌ଦର୍ଶନ ୧୯୪୨
୧୩. ବୌଦ୍ଧ- ଦର୍ଶନ ୧୯୪୨

ଧର୍ମ :

୧୪. ଇସଲାମ ଧର୍ମ କୀ ରୂପରେଖା ୧୯୨୩
୧୫. ବୁଦ୍ଧ-ଚର୍ଯା ୧୯୩୪

୧୬. ଧମ୍ମପଦ ୧୯୩୩
୧୭. ମଜ୍‌ଝିମ-ନିକାୟ ୧୯୩୩
୧୮. ବିନୟ ପିଟକ ୧୯୩୪
୧୯. ଦୀଘ ନିକାୟ ୧୯୩୫
୨୦. ତିବ୍‌ବତ ମେଁ ବୌଦ୍ଧ ଧର୍ମ ୧୯୩୫
୨୧. ବୌଦ୍ଧ ସଂସ୍କୃତି

**ଭ୍ରମଣ :**

୨୨. ସୋଭିଏତ ଭୂମି
୨୩. ସୋଭିଏତ ମଧ୍ୟ ଏସିଆ
୨୪. ଦାର୍ଜ୍ଜିଲିଂ ପରିଚୟ ୧୯୫୦
୨୫. କୁମାୟୁଁ ୧୯୫୧
୨୬. ଗଡ଼ୱାଲ ୧୯୫୨
୨୭. ନେପାଳ ୧୯୫୩
୨୮. ହିମାଚଳ ପ୍ରଦେଶ ୧୯୫୪ (ଅପ୍ରକାଶିତ)
୨୯. ଜୌନସାର-ଦେହରାଦୁନ, ୧୯୫୫
୩୦. ଆଜମଗଡ଼ କୀ ପୂରାକତା

**ଅଭିଧାନ ଓ ଶବ୍ଦାବଳୀ :**

୩୧. ଶାସନ ଶବ୍ଦକୋଷ ୧୯୪୮
୩୨. ତିବ୍‌ବତୀ-ହିନ୍ଦୀ-କୋଷ(୧ମ ଖଣ୍ଡ) ୧୯୭୪

**ସାହିତ୍ୟର ଇତିହାସ :**

୩୩. ହିନ୍ଦୀ କାବ୍ୟଧାରା (ଅପଭ୍ରଂଶ) ୧୯୪୪
୩୪. ଦକ୍ଷିଣୀ କାବ୍ୟଧାରା, ୧୯୫୨

**ଲୋକ ସାହିତ୍ୟ :**

୩୫. ଆଦି ହିନ୍ଦୀ କୀ କହାନୀୟାଁ
ଅଓର ଗୀତେଁ ୧୯୫୦

**ଗବେଷଣା ଗ୍ରନ୍ଥ :**

୩୬. ସହରପାଦ କା ଦୋହା-କୋଷ, ୧୯୫୪

**ଇତିହାସ :**

୩୭. ମଧ୍ୟ ଏସିଆ କା ଇତିହାସ
(୧ମ ଓ ୨ୟ ଖଣ୍ଡ) ୧୯୫୨



୩୮. ଋଗବେଦିକ ଆର୍ଯ୍ୟ ୧୯୫୬
୩୯. ଅକବର ୧୯୫୬
୪୦. ଭାରତ ମେଁ ଅଂଗ୍ରେଜୀ
ରାଜ୍ୟ କେ ସଂସ୍ଥାପକ ୧୯୫୭
୪୧. ପାଲି ସାହିତ୍ୟ କା ଇତିହାସ

**ସଂକଳନ :**

୪୨. ସଂସ୍କୃତ କାବ୍ୟଧାରା ୧୯୫୫ (ସଂସ୍କୃତ)
୪୩. ତୁଳସୀ ରାମାୟଣ ସଂକ୍ଷେପ ୧୯୫୭
୪୪. ସୂତ୍ର କୃତାଙ୍ଗ (ସଂପାଦିତ) ସଂସ୍କୃତ
୪୫. ପାଲି କାବ୍ୟଧାରା (ଅପ୍ରକାଶିତ)

**ଅନୁବାଦ :**

୪୬ ଶୈତାନ କି ଆଁଖ ୧୯୨୩
୪୭. ବିସ୍ମୃତ କେ ଗର୍ଭ ମେ ୧୯୨୩
୪୮. ଜାଦୁ କା ମୁଲ୍କ ୧୯୨୩
୪୯. ସୋନେ କୀ ଟାଲ ୧୯୨୩
୫୦ ଦାଖୁନ୍ଦା ୧୯୪୭
୫୧. ଜୋ ଦାସ ଥେ ୧୯୪୭
୫୨. ଅନାଥ ୧୯୪୮
୫୩. ସଂବିଧାନ କା ମସୌଦା ୧୯୪୮
୫୪. ଅଦୀନା ୧୯୫୧
୫୫. ସୁଦଖୋର କୀ ମୌତ ୧୯୫୧
୫୩ ଶାଦୀ ୧୯୫୨

**ସଂସ୍କୃତ (ସଂପାଦନା, ଅନୁବାଦ ଏବଂ ଗବେଷଣା)**

୫୭. ସଂସ୍କୃତ ପାଠମାଳା (୫ମ ଖଣ୍ଡ) ୧୯୨୮
୫୮. ଅଭିଧର୍ମ କୋଶ ୧୯୩୦
୫୯. ବିଜ୍ଞପ୍ତି ମାତ୍ରତା ସିଦ୍ଧି ୧୯୩୪
୬୦. ଅଧ୍ୟାୟ ଶତକ ୧୯୩୫
୬୧. ପ୍ରମାଣ ବାର୍ତିକ ୧୯୩୫
୬୨. ପ୍ରମାଣ ବାର୍ତିକ ଭାଷ୍ୟ ୧୯୩୫-୩୬

୬୩. ପ୍ରମାଣ ବାର୍ତିକ ବୃତ୍ତି ୧୯୩୬
୬୪. ପ୍ରମାଣ ବାର୍ତିକ ସ୍ୱ-ବୃତ୍ତି ୧୯୩୬
୬୫. ପ୍ରମାଣ-ବାର୍ତିକ ସ୍ୱ-ବୃତ୍ତି ଟିକା ୧୯୩୭
୬୬. ବିନୟ ସୂତ୍ର ୧୯୪୩
୬୭. ହେତୁ-ବିନ୍ଦୁ ୧୯୪୪
୬୮ ନିଦାନ-ସୂତ୍ର (ପରୀକ୍ଷା) ୧୯୫୧
୬୯. ସମ୍ବନ୍ଧି-ପରୀକ୍ଷା ୧୯୪୪
୭୦. ମହାପରିନିର୍ବାଣ ସୂତ୍ର ୧୯୫୧
୭୧. ବାଦନ୍ୟାୟ
୭୩. ବିଗ୍ରହ-ବ୍ୟାବର୍ତିନୀ

## ଅନ୍ୟ ଭାଷାରେ ଅନୁଦିତ ରାହୁଲଙ୍କ ଗ୍ରନ୍ଥ ସମୂହ:

୧. ସିଂହ ସେନାପତି — ଉର୍ଦ୍ଦୁ, ମରାଠି, ଗୁଜୁରାଟି, ତେଲଗୁ
୨. ଜୟ ଯୌଧେୟ — ମରାଠି, ଗୁଜୁରାଟି
୩. ଭଲଗା ସେ ଗଙ୍ଗା — ଉର୍ଦ୍ଦୁ, ସିନ୍ଧି, ଗୁଜୁରାଟି, ମରାଠି, କନ୍ନଡ଼, ମାଲାୟାଲମ, ତାମିଲ, ତେଲୁଗୁ, ଓଡ଼ିଆ, ଆସାମୀୟା, ନେପାଳୀ, ବର୍ମି, ଋଷ, ଇଂରେଜୀ, ବଂଗଳା
୪. ମଧୁର ସ୍ୱପ୍ନ — ଗୁଜୁରାଟି
୫. ସରଦାର ପୃଥ୍ୱୀ ସିଂହ — ମରାଠି, ଗୁଜୁରାଟି
୬. ବୈଜ୍ଞାନିକ ଭୌତିକବାଦ — ବଙ୍ଗଳା
୭. ଦର୍ଶନ-ଦିଗଦର୍ଶନ — ବଂଗଳା, ମାଲାୟାଲମ
୮ ତିବ୍ବତ ମେ ସଉଆ ବର୍ଷ — ବଂଗଳା
୯. ବାଇସବିଂ ସଦୀ — ଉର୍ଦ୍ଦୁ, ଗୁଜୁରାଟି, ମରାଠି
୧୦. ସାମ୍ୟବାଦ ହୀ କେଁଓ ? — ଉର୍ଦ୍ଦୁ, ତାମିଲ
୧୧. ମାନବ ସମାଜ — ବଂଗଳା, ଗୁଜୁରାଟି
୧୨. ବିଶ୍ୱ କୀ ରୂପରେଖା — ମାଲାୟାଲମ
୧୩. ସଂସ୍କୃତ ପାଠମାଳା — ସିଂହଳୀ





# ଭୂପେନ୍ ମହାପାତ୍ର

ପ୍ରଭାକର ମାଚୱେଙ୍କ ଦ୍ୱାରା ହିନ୍ଦୀ ଭାଷାରେ ଲିଖିତ 'ରାହୁଲ ସଂକୃତାୟନ'ଙ୍କ ଜୀବନୀ ପୁସ୍ତକକୁ ଓଡ଼ିଆରେ ଅନୁବାଦ କରିଥିବା ଭୂପେନ ମହାପାତ୍ର ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଆସିଛନ୍ତି । ୧୯୩୫ ମସିହା ଅଗଷ୍ଟ ୩ ତାରିଖରେ ବାଲେଶ୍ୱର ଜିଲ୍ଲା ଜଳେଶ୍ୱର କେଶପୁରାର କୋଟାସାହି ଗ୍ରାମରେ ଜନ୍ମ ଗ୍ରହଣ କରିଥିବା ଶ୍ରୀ ମହାପାତ୍ରଙ୍କର ଏଯାବତ୍ ୧୦ଖଣ୍ଡ ସଂକଳନ (୨ ଖଣ୍ଡ ପ୍ରକାଶ ଅପେକ୍ଷାରେ), ୪ ଖଣ୍ଡ ଉପନ୍ୟାସ, ୨ ଖଣ୍ଡ ଭ୍ରମଣ କାହାଣୀ, ୨ ଖଣ୍ଡ ପ୍ରବନ୍ଧ ସଂକଳନ, ଗୋଟିଏ ଅନୁବାଦ ପୁସ୍ତକ (ରବୀନ୍ଦ୍ରନାଥଙ୍କ ୧୦୭ଖଣ୍ଡ ଚିଠିର ଓଡ଼ିଆ ଅନୁବାଦ) ପ୍ରକାଶିତ ହୋଇଛି । ଶ୍ରୀ ମହାପାତ୍ର ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ନିୟମିତ ଗଳ୍ପ, ପ୍ରବଂଧ, ଉପନ୍ୟାସ ଓ ଭ୍ରମଣ କାହାଣୀ ନିୟମିତ ଲେଖିଆସୁଛନ୍ତି । ତାଙ୍କର କେତୋଟି ଚର୍ଚ୍ଚିତ ଗଳ୍ପ ଇଂରାଜୀ, ହିନ୍ଦୀ, ତେଲୁଗୁ, ମାଲାୟାଲମ, କନ୍ନଡ, ବଙ୍ଗଳା, ଆସାମୀୟା ଓ ରାଜସ୍ଥାନୀ ଭାଷାରେ ଅନୁଦିତ ଓ ପ୍ରକାଶିତ । ଅଳ୍ପ କେତୋଟି କବିତା ଓ ଶିଶୁ ସାହିତ୍ୟ ମଧ୍ୟ ପ୍ରକାଶିତ ହୋଇଛି । ଜଣେ ସୁପରିଚିତ ସ୍ତମ୍ଭ ଲେଖକ ଭାବରେ ସେ ଓଡ଼ିଶାର ବିଭିନ୍ନ ସଂବାଦପତ୍ର ଯଥା- ସମାଜ, ସମ୍ବାଦ, ସମୟ, ପ୍ରଗତିବାଦୀ, ଅନୁପମ ଭାରତ ଓ ଧ୍ୱନିପ୍ରତିଧ୍ୱନିରେ ଲେଖି ଆସୁଛନ୍ତି । ଏଯାବତ୍ ସେ ପ୍ରାୟ ଦୁଇ ହଜାର ସ୍ତମ୍ଭ ଲେଖିଛନ୍ତି । ନିର୍ବାଚିତ ସ୍ତମ୍ଭକୁ ନେଇ ତାଙ୍କର ଦୁଇଟି ପ୍ରବଂଧ ସଂକଳନ ପ୍ରକାଶିତ ହୋଇଛି । ମହାପଣ୍ଡିତ ରାହୁଲ ସଂକୃତାୟନଙ୍କ ଜୀବନୀର ଓଡ଼ିଆ ଅନୁବାଦ ନିଶ୍ଚିତ ଭାବରେ ପାଠକୀୟ ଆଦୃତି ଲାଭ କରିବ ବୋଲି ଆଶା ।

ପ୍ରକାଶକ